# ହିତୋପଦେଶ

## (ତୃତୀୟ ଖଣ୍ଡ : ବିଗ୍ରହ ଓ ସନ୍ଧି)

[ ମୂଳ ସଂସ୍କୃତ ଶ୍ଲୋକସହ ଅନୂଦିତ ]

ଅନୁବାଦକ

**ଅଧ୍ୟାପକ ଶ୍ରୀଧର ଦାସ**

ଗ୍ରନ୍ଥମନ୍ଦିର

ପ୍ରକାଶକ

ଶ୍ରୀ ଅଭିରାମ ମହାପାତ୍ର

ଗ୍ରନ୍ଥ ମନ୍ଦିର

କଟକ-୨ : ବ୍ରହ୍ମପୁର

ପ୍ରଥମ ପ୍ରକାଶ

ଜାନୁୟାରୀ, ୧୯୭୨

ମୁଦ୍ରାକର

ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦାଶ

ଅନ୍ନଦା ପ୍ରେସ

ତୁଳସୀପୁର, କଟକ-୮

ମୂଲ୍ୟ : ଟ ୨·୭୫

# ହିତୋପଦେଶ

## ବିଗ୍ରହ

ପୁନରାୟ କଥାରମ୍ଭ କରି ରାଜପୁତ୍ରମାନେ କହିଲେ, "ଆର୍ଯ୍ୟ, ଆମେମାନେ ହେଉଛୁ ରାଜପୁତ୍ର । ତେଣୁ ବିଗ୍ରହ ବିଷୟରେ କିଛି ଶୁଣିବାକୁ ଆମର କୌତୂହଳ ହେଉଅଛି ।" ବିଷ୍ଣୁଶର୍ମା କହିଲେ, "ତୁମେମାନେ ଯେବେ ବିଗ୍ରହ ବିଷୟରେ ଶୁଣିବାକୁ ଇଚ୍ଛା କରୁଛ, ତେବେ କହୁଛି । ବିଗ୍ରହର ପ୍ରଥମ ଶ୍ଳୋକଟି ହେଉଛି—

ହଂସୈଃ ସହ ମୟୂରାଣାଂ ବିଗ୍ରହେ ତୁଲ୍ୟବିକ୍ରମେ ।
ବିଶ୍ୱାସ୍ୟ ବଞ୍ଚିତା ହଂସାଃ କାକୈଃ ସ୍ଥିତ୍ୱାରିମନ୍ଦିରେ । ୧ ।

ସମାନବଳଶାଳୀ ହଂସ ଓ ମୟୂରମାନଙ୍କ ଯୁଦ୍ଧରେ କାକମାନେ ହଂସମାନଙ୍କର ବିଶ୍ୱାସ ଜନ୍ମାଇ, ସେମାନଙ୍କ ଘର ଭିତରେ ରହି ସେମାନଙ୍କୁହିଁ ପରାସ୍ତ କରାଇଲେ ।" ୧ ।

ରାଜପୁତ୍ରମାନେ ପଚାରିଲେ, "ସେ କଥା କିପରି ହେଲା ?" ବିଷ୍ଣୁଶର୍ମା କହିଲେ—

କର୍ପୂରଦ୍ୱୀପରେ ପଦ୍ମକେଳି ନାମରେ ଗୋଟିଏ ପୁଷ୍କରିଣୀ ଅଛି । ସେହି ପୁଷ୍କରିଣୀରେ ହିରଣ୍ୟଗର୍ଭ ବୋଲି ଗୋଟିଏ ହଂସ ବାସ କରୁଥିଲା । ସମସ୍ତ ଜଳଚର ପକ୍ଷୀ ମିଳିତହୋଇ ତାହାକୁ ପକ୍ଷୀରାଜ୍ୟର ରାଜପଦରେ ଅଭିଷିକ୍ତ କଲେ । କାରଣ—

ଯଦି ନ ସ୍ୟାନ୍ନରପତିଃ ସମ୍ୟଙ୍ନେତା, ତତଃ ପ୍ରଜା ।
ଅକର୍ଣ୍ଣଧାରା ଜଲଧୌ ବିପ୍ଲବେତେହ ନୌରିବ । ୨ ।

ଯଦି ଜଣେ ଉପଯୁକ୍ତ ନେତା ରାଜାରୂପେ ନ ରହନ୍ତି, ତେବେ ପ୍ରଜାମାନଙ୍କର ଅବସ୍ଥା ସମୁଦ୍ରରେ ଭ୍ରମମାନ କର୍ଣ୍ଣଧାରହୀନ ପୋତ-ସଦୃଶ ଶୋଚନୀୟ ହୁଏ । ୨ । ପୁଣି—

ପ୍ରଜାଂ ସଂରକ୍ଷତି ନୃପଃ ସା ବର୍ଦ୍ଧୟତି ପାର୍ଥିବମ୍ ।
ବର୍ଦ୍ଧନାଦ୍ରକ୍ଷଣଂ ଶ୍ରେୟସ୍ତଦଭାବେ ସଦପ୍ୟସତ୍ । ୩ ।

ରାଜା ପ୍ରଜାମାନଙ୍କୁ ରକ୍ଷା କରନ୍ତି; ପ୍ରଜାମାନେ ତାଙ୍କୁ ସମୃଦ୍ଧିଶାଳୀ କରନ୍ତି । କିନ୍ତୁ ବର୍ଦ୍ଧନ ଅପେକ୍ଷା ରକ୍ଷଣ ଶ୍ରେଷ୍ଠତର, କାରଣ ରକ୍ଷଣର ଅଭାବରୁ ବିଦ୍ୟମାନ ବସ୍ତୁ ମଧ୍ୟ ନଷ୍ଟ ହୋଇଯାଏ । ୩ ।

ଏକଦା ସେହି ହଂସ ବିସ୍ତାରିତ କମଳରୂପକ ପଲଙ୍କ ଉପରେ ଆନନ୍ଦରେ ବସିଥିଲା; ତାହାର ପରିବାରବର୍ଗ ତାହାକୁ ବେଢ଼ି ବସିଥିଲେ । ଏହି ସମୟରେ ଦୀର୍ଘମୁଖ ନାମକ ଗୋଟିଏ ବକ କୌଣସିଠାରୁ ଆସି ପ୍ରଣାମ କରି ସେଠାରେ ବସିଲା । ହଂସରାଜ ପଚାରିଲା, "ହେ ଦୀର୍ଘମୁଖ, ତୁମେ ଅନ୍ୟ କୌଣସି ଦେଶରୁ ଆସିଛ । ସମ୍ବାଦ କଣ, କୁହ ।" ସେ କହିଲା, ପ୍ରଭୁ, ଗୋଟିଏ ବିଶେଷ ସମ୍ବାଦ ଅଛି । ତାହା ଜଣାଇବା ପାଇଁ ମୁଁ ଏତେ ଶୀଘ୍ର ଆସିଛି । ଶୁଣନ୍ତୁ—

ଜମ୍ବୁ ଦ୍ୱୀପରେ ବିନ୍ଧ୍ୟନାମରେ ଗୋଟିଏ ପର୍ବତ ଅଛି । ସେଠାରେ ଚିତ୍ରବର୍ଣ୍ଣ ବୋଲି ଗୋଟିଏ ମୟୂର ପକ୍ଷୀମାନଙ୍କର ରାଜା ରୂପେ ବାସକରେ । ମୁଁ ଦଗ୍ଧାରଣ୍ୟରେ ଭ୍ରମଣ କରୁଥିବାବେଳେ

ତାହାର ଅନୁଚରମାନେ ଭ୍ରମଣ କରୁକରୁ ମୋତେ ଦେଖି ପଚାରିଲେ, "ତୁମେ କିଏ ? କେଉଁଠାରୁ ଆସିଛ ?" ତହୁଁ ମୁଁ ଉତ୍ତର କଲି, "ମୁଁ ହେଉଛି କର୍ପୂରଦ୍ୱୀପର ରାଜଚକ୍ରବର୍ତ୍ତୀ ରାଜହଂସ ହିରଣ୍ୟ-ଗର୍ଭଙ୍କର ଜଣେ ଅନୁଚର । କୌତୂହଳବଶତଃ ଅନ୍ୟ ଦେଶ ଦେଖିବା ପାଇଁ ଆସିଛି ।" ଏହା ଶୁଣି ସେମାନେ କହିଲେ, "ଏ ଦୁଇ ଦେଶ ମଧ୍ୟରେ କେଉଁ ଦେଶ ଓ କେଉଁ ରାଜା ଭଲ ?"

ମୁଁ କହିଲି, "ଏପରି କଅଣ କହୁଛ ! ଏ ଦୁଇ ରାଜ୍ୟ ଭିତରେ ମହାନ୍ ପ୍ରଭେଦ ଅଛି । କର୍ପୂରଦ୍ୱୀପ ସ୍ୱର୍ଗତୁଲ୍ୟ, ରାଜହଂସ ଦ୍ୱିତୀୟ ଇନ୍ଦ୍ର ସଦୃଶ; ତାହା କପରି ବର୍ଣ୍ଣନା କରିବି । ତୁମେମାନେ ଏପରି ମରୁସ୍ଥଳରେ ପଡ଼ି କଅଣ କରୁଛ ? ଆମ ଦେଶକୁ ଚାଲ ।" ମୋର ଏହି କଥା ଶୁଣି ସବୁ ପକ୍ଷୀ କ୍ରୁଦ୍ଧ ହୋଇ ଉଠିଲେ । ଯଥାର୍ଥରେ କୁହା ଯାଇଛି—

ପୟଃପାନଂ ଭୁଜଙ୍ଗାନାଂ କେବଳଂ ବିଷବର୍ଦ୍ଧନମ୍ ।
ଉପଦେଶୋ ହି ମୂର୍ଖାଣାଂ ପ୍ରକୋପାୟ, ନ ଶାନ୍ତୟେ । ୪ ।

ସାପକୁ ଦୁଧ ପିଆଇବାର ଅର୍ଥ ହେଉଛି କେବଳ ତାର ବିଷକୁ ବଢ଼ାଇବା । ସେହିପରି ମୂର୍ଖକୁ ଭଲ ଉପଦେଶ ଦେଲେ, କେବଳ ତାର କୋପ ବୃଦ୍ଧିପାଏ, ଶାନ୍ତ ହୁଏ ନାହିଁ । ୪ । ପୁଣି—

ବିଦ୍ୱାନେବୋପଦେଷ୍ଟବ୍ୟୋ ନାଽବିଦ୍ୱାଂସ୍ତୁ କଦାଚନ ।
ବାନରାନୁପଦଶ୍ୟାଽଥ ସ୍ଥାନଭ୍ରଷ୍ଟା ଯଯୁଃ ଖଗାଃ । ୫ ।

ବିଦ୍ୱାନ୍ ଲୋକକୁ ଉପଦେଶ ଦେବା ଉଚିତ । ମୂର୍ଖକୁ କେବେ-ହେଲେ ଉପଦେଶ ଦେବା ଉଚିତ ନୁହେଁ । ବାନରମାନଙ୍କୁ ଉପଦେଶ

ଦେବାକୁ ଯାଇ ପକ୍ଷୀମାନେ ନିଜ ବାସସ୍ଥାନରୁ ବିତାଡ଼ିତ ହୋଇଥିଲେ । ୫ ।

ହଂସରାଜ ପଚାରିଲା, "ସେ କଥା କଅଣ ?"

ଦୀର୍ଘମୁଖ କହିଲା—

## କଥା-୧

ନର୍ମଦାତଟବର୍ତ୍ତୀ ପର୍ବତ ଉପତ୍ୟକାରେ ଗୋଟିଏ ପ୍ରକାଣ୍ଡ ଶାଳ୍ମଳୀ ବୃକ୍ଷ ଅଛି । ସେହି ବୃକ୍ଷର କୋଟରରେ ପକ୍ଷୀମାନେ ନୀଡ଼ ନିର୍ମାଣକରି ସୁଖରେ ବାସ କରୁଥିଲେ । ଏକଦା ବର୍ଷାକାଳରେ ନୀଳବସ୍ତ୍ର ସଦୃଶ ମେଘମାଳାରେ ଆକାଶ ଆବୃତ ହୋଇଗଲା । ପ୍ରଚଣ୍ଡ ଧାରାରେ ଜଳବୃଷ୍ଟି ହେବାକୁ ଲାଗିଲା । ବାନରମାନେ ଶୀତରେ କାତର ହୋଇ ଥରି ଥରି ବୃକ୍ଷତଳେ ବସିଥିଲେ । ସେମାନଙ୍କୁ ଦେଖି ପକ୍ଷୀମାନେ ଦୟାର୍ଦ୍ର ହୃଦୟରେ କହିଲେ, "ହେ ବାନରମାନେ, ଶୁଣ—

ଅସ୍ମାଭିର୍ନିର୍ମିତା ନୀଡ଼ାଶ୍ଚଞ୍ଚୁମାତ୍ରାହୃତୈସ୍ତୃଣୈଃ ।
ହସ୍ତପାଦାଦିସଂଯୁକ୍ତା ଯୂୟଂ କିମବସୀଦଥ ? ୬ ।

ଆମେମାନେ କେବଳ ଚଞ୍ଚୁଦ୍ୱାରା ତୃଣ ସଂଗ୍ରହ କରି ନୀଡ଼ ନିର୍ମାଣ କରି ରହିଛୁ । ତୁମମାନଙ୍କର ହସ୍ତପଦ ଥାଉଁ ଥାଉଁ ତୁମେ-ମାନେ କାହିଁକି ଏପରି କଷ୍ଟ ଭୋଗୁଅଛ ?" ୬ ।

ଏହା ଶୁଣି ବାନରମାନେ କୁପିତ ହୋଇ ବିଚାର କଲେ, "ଓଃ, ବାୟୁରହିତ ନୀଡ଼ ମଧ୍ୟରେ ସୁଖରେ ରହି ଏହି ପକ୍ଷୀମାନେ ଆମର ନିନ୍ଦା କରୁଅଛନ୍ତି । ଆଚ୍ଛା, ବର୍ଷା ବନ୍ଦ ହୋଇ ଯାଉ, ଦେଖାଯିବ ।"

ଶେଷରେ ବର୍ଷା ବନ୍ଦ ହୋଇଯିବାରୁ ବାନରମାନେ ବୃକ୍ଷରେ ଚଢ଼ି ସବୁ ବସା ଭାଙ୍ଗି ଡିମ୍ବଗୁଡ଼ିକୁ ତଳେ ଫିଙ୍ଗି ଦେଲେ । ସେଥିପାଇଁ ମୁଁ କହୁଥିଲି ଯେ ବିଦ୍ୱାନଙ୍କୁ ଉପଦେଶ ଦେବା ଉଚିତ, ମୂର୍ଖଙ୍କୁ ଉପଦେଶ ଦେବା ଉଚିତ ନୁହେଁ ଇତ୍ୟାଦି ।

ହଂସରାଜ କହିଲା, "ସେହି ପକ୍ଷୀମାନେ ତାହାପରେ କଅଣ କଲେ ?" ବକ କହିଲା, "ତହୁଁ ସେହି ( ମୟୂରର ଅନୁଚର ) ପକ୍ଷୀମାନେ କ୍ରୋଧାନ୍ୱିତ ହୋଇ କହିଲେ—ସେ ରାଜହଂସକୁ କିଏ ରାଜା କଲା ? ମୁଁ ମଧ୍ୟ କୁପିତ ହୋଇ କହିଲି—ତୁମର ସେ ମୟୂରକୁ କିଏ ରାଜା କଲା ? ଏହା ଶୁଣି ସେମାନେ ମୋତେ ମାରି ଦେବାକୁ ଉଦ୍ୟତ ହେଲେ । ମୁଁ ମଧ୍ୟ ମୋର ପରାକ୍ରମ ଦେଖାଇଲି । କାରଣ—

ଅନ୍ୟଦା ଭୂଷଣଂ ପୁଂସଃ କ୍ଷମା ଲଜ୍ଜେବ ଯୋଷିତଃ ।
ପରାକ୍ରମଃ ପରିଭବେ, ବୈୟାତ୍ୟଂ ସୁରତେଷ୍ୱିବ । ୭ ।

ଅନ୍ୟ ସମୟରେ ଯେପରି ଲଜ୍ଜା ନାରୀମାନଙ୍କର ଭୂଷଣ, ସେହିପରି କ୍ଷମା ପୁରୁଷମାନଙ୍କର ଭୂଷଣ । କିନ୍ତୁ ରତିକାଳରେ ଯେପରି ଧୃଷ୍ଟତା ନାରୀମାନଙ୍କର ଭୂଷଣ, ଅପମାନ ସମୟରେ ପରାକ୍ରମ ହେଉଛି ସେହିପରି ପୁରୁଷମାନଙ୍କର ଭୂଷଣ ।" ୭ ।

ରାଜହଂସ ହସି ହସି କହିଲା—

ଆତ୍ମନଶ୍ଚ ପରେଷାଂ ଚ ଯଃ ସମୀକ୍ଷ୍ୟ ବଳାବଳମ୍ ।
ଅନ୍ତରଂ ନୈବ ଜାନାତି, ସ ତିରସ୍କ୍ରିୟତେଽରିଭିଃ । ୮ ।

ନିଜର ଓ ଶତ୍ରୁର ବଳାବଳ ଦେଖି ମଧ୍ୟ ଯିଏ ଦୁହିଁଙ୍କର ଅନ୍ତର ବୁଝି ନ ପାରେ, ସେ ଶତ୍ରୁଠାରୁ ତିରସ୍କାର ପାଇଥାଏ । ୮ ।

ସୁଚିରଂ ହି ଚରନ୍ନିତ୍ୟଂ କ୍ଷେତ୍ରେ ଶସ୍ୟମବୁଦ୍ଧିମାନ୍ ।
ଦ୍ୱୀପିଚର୍ମପରିଚ୍ଛନ୍ନୋ ବାଗ୍‌ଦୋଷାଦ୍ ଗର୍ଦ୍ଦଭୋ ହତଃ । ୯ ।

ବହୁଦିନ ପର୍ଯ୍ୟନ୍ତ ପ୍ରତ୍ୟହ ଶସ୍ୟକ୍ଷେତ୍ରରେ ଚରୁଥିବା ବ୍ୟାଘ୍ର-ଚର୍ମାବୃତ ନିର୍ବୋଧ ଗର୍ଦ୍ଦଭ କେବଳ ଶବ୍ଦ କରିବା ଦୋଷରୁ ନିହତ ହୋଇଥିଲା ।'' ୯ ।

ବକ ପଚାରିଲେ, ''ସେ କଥା କିପରି ?'' ରାଜହଂସ କହିଲା—

## କଥା-୨

''ହସ୍ତିନାପୁରରେ ବିଳାସ ନାମରେ ଜଣେ ରଜକ ଥିଲା । ତାହାର ଗଧଟି ବହୁତ ଭାର ବହି ବହି ଦୁର୍ବଳ ଓ ମୃତପ୍ରାୟ ହୋଇଗଲା । ତହୁଁ ରଜକ ତାକୁ ଗୋଟିଏ ବ୍ୟାଘ୍ର ଚର୍ମରେ ଆଚ୍ଛାଦିତ କରି ବନର ନିକଟବର୍ତ୍ତୀ ଏକ ଶସ୍ୟକ୍ଷେତ୍ରରେ ଛାଡ଼ିଦେଲା । କ୍ଷେତ୍ରର ଅଧିକାରୀମାନେ ଦୂରରୁ ତାହାକୁ ଦେଖି ବ୍ୟାଘ୍ର ମନେକରି ଶୀଘ୍ର ପଳାୟନ କଲେ ।

ଏକଦା ଜଣେ ଶସ୍ୟରକ୍ଷକ ନିଜ ଶରୀରକୁ ଗୋଟିଏ ଧୂସର ରଙ୍ଗର କମ୍ବଳ ଦ୍ୱାରା ଆବୃତ କରି, ଧନୁଶର ସଜାଡ଼ି, ଏକାନ୍ତ ସ୍ଥାନରେ ନଇଁପଡ଼ି ରହିଲା । ବ୍ୟାଘ୍ରଚର୍ମାବୃତ ଗଧଟି ଯଥେଷ୍ଟ ଶସ୍ୟଖାଇ ହୃଷ୍ଟ, ପୁଷ୍ଟ ଓ ସବଳ ହୋଇଯାଇଥିଲା । କମ୍ବଳାବୃତ ଲୋକଟିକୁ ଗୋଟିଏ ଅନ୍ୟ ଗର୍ଦ୍ଦଭ ମନେକରି ସେ ଉଚ୍ଚସ୍ୱରରେ ରାବ ତାହା ଆଡ଼କୁ ଧାଇଁଲା । ଏହାର ଶବ୍ଦରୁ ଶସ୍ୟରକ୍ଷକ 'ଏ ଗୋଟିଏ ଗଧ' ବୋଲି ସ୍ଥିରକରି ଅନାୟାସରେ ତାହାକୁ ମାରିପକାଇଲା । ମୁଁ ଏହି ହେତୁରୁ 'ବହୁଦିନ ପର୍ଯ୍ୟନ୍ତ ପ୍ରତ୍ୟହ ଶସ୍ୟକ୍ଷେତ୍ରରେ' ଇତ୍ୟାଦି କହୁଥିଲି ।''

ଦୀର୍ଘମୁଖ କହିଲା, "ତପରେ ପକ୍ଷୀମାନେ ମୋତେ କହିଲେ, 'ରେ ପାପାତ୍ମା, ଦୁଷ୍ଟ ବକ ! ଆମର ରାଜ୍ୟରେ ଚରି ତୁ ଆମ ରାଜାଙ୍କର ନିନ୍ଦା କରୁଛୁ । ତେଣୁ ତୋତେ କ୍ଷମା ଦେବା ଉଚିତ ନୁହେଁ ।' ଏହା କହି ସେମାନେ ମୋତେ ଚଞ୍ଚୁରେ ଆଘାତ କରିବାକୁ ଲାଗିଲେ ଓ କ୍ରୋଧରେ କହିଲେ, 'ରେ ମୂର୍ଖ, ଦେଖ ! ତୁମର ରଜା ସେ ହଂସ ନିତାନ୍ତ ଦୁର୍ବଳ । ତାର ରାଜ୍ୟରେ କୌଣସି ଅଧିକାର ନାହିଁ । ଯିଏ ନିତାନ୍ତ ଦୁର୍ବଳ, ସେ ହାତରେ ଥିବା ଧନକୁ ମଧ୍ୟ ରକ୍ଷା କରିବାକୁ ଅକ୍ଷମ ହୁଏ । ସେ କାହୁଁ ରାଜ୍ୟ ଶାସନ କରିପାରିବ ? ତାର ରାଜ୍ୟ ବା କଅଣ ? ତୁ ବି ଏକ କୂପମଣ୍ଡୂକ; ସେଥିପାଇଁ ତାର ଆଶ୍ରୟ ନେବାକୁ ଉପଦେଶ ଦେଉଛୁ । ଶୁଣ—

ସେବିତବ୍ୟୋ ମହାବୃକ୍ଷଃ ଫଳଚ୍ଛାୟାସମନ୍ୱିତଃ ।
ଯଦି ଦୈବାତ୍ ଫଳଂ ନାସ୍ତି ଛାୟା କେନ ନିବାର୍ଯ୍ୟତେ । ୧୦ ।

ଫଳ ଓ ଛାୟାଯୁକ୍ତ ମହାନ୍ ବୃକ୍ଷର ଆଶ୍ରୟ ନେବା ଉଚିତ । କାରଣ ଯଦି ଦୈବାତ୍ ଫଳ ନ ମିଳିଲା, ତେବେ ଛାୟାକୁ ତ କେହି ବାରଣ କରିବ ନାହିଁ । ୧୦ । ପୁଣି—

ହୀନସେବା ନ କର୍ତ୍ତବ୍ୟା କର୍ତ୍ତବ୍ୟୋ ମହଦାଶ୍ରୟଃ
ପୟୋଽପି ଶୌଣ୍ଡିକୀହସ୍ତେ 'ବାରୁଣୀ'ତ୍ୟଭିଧୀୟତେ । ୧୧ ।

ନୀଚ ଲୋକର ସେବା କରିବା ଉଚିତ ନୁହେଁ । ବଡ଼ଲୋକଙ୍କର ଆଶ୍ରୟ ନେବା ବିଧେୟ । ଯେହେତୁ, ଶୁଣ୍ଡୀହାତରେ ଜଳ ମଧ୍ୟ ମଦ୍ୟ ବୋଲି କଥିତ ହୋଇଥାଏ । ୧୧ । ପୁଣି—

ମହାନପ୍ୟଲ୍ପତାଂ ଯାତି ନିର୍ଗୁଣେ ଗୁଣବିସ୍ତରଃ
ଆଧାରାଧେୟଭାବେନ ଗଜେନ୍ଦ୍ର ଇବ ଦର୍ପଣେ । ୧୨ ।

ଯେପରି ଗଜରାଜ ଦର୍ପଣରେ ପ୍ରଭାବରୁ ଶ୍ରେଷ୍ଠ ଦେଖାଯାଏ, ସେହିପରି ନିର୍ଗୁଣ ଲୋକଠାରେ ମହାନ୍ ଗୁଣ ଥିଲେହେଁ ତାହା ଆଧାର ପ୍ରଭାବରୁ ତୁଚ୍ଛ ହୋଇଯାଏ । ୧୨ । କିନ୍ତୁ—

ଅଜା ସିଂହପ୍ରସାଦେନ ବନେ ଚରତି ନିର୍ଭୟମ୍
ରାମମାସାଦ୍ୟ ଲଙ୍କାୟାଂ ରାଜ୍ୟଂ ଲେଭେ ବିଭୀଷଣଃ । ୧୩ ।

ସିଂହର ଅନୁଗ୍ରହରୁ ଛେଳି ନିର୍ଭୟରେ ବନରେ ବିଚରଣ କରେ । ବିଭୀଷଣ ରାମଙ୍କୁ ଆଶ୍ରୟ କରିଥିବାରୁ ହିଁ ଲଙ୍କାରେ ରାଜ୍ୟଲାଭ କରିଥିଲେ । ୧୩ । ବିଶେଷତଃ—

ବ୍ୟପଦେଶେଽପି ସିଦ୍ଧିଃ ସ୍ୟାଦତିଶକ୍ତେ ନରାଧିପେ ।
ଶଶିନୋ ବ୍ୟପଦେଶେନ ଶଶକାଃ ସୁଖମାସତେ । ୧୪ ।

ଯେପରି ଶଶକମାନେ ଚନ୍ଦ୍ରଙ୍କର ନାମ କହି ଆନନ୍ଦରେ ବାସ କରିଥିଲେ, ସେହିପରି କେବେ କେବେ ଅତି ଶକ୍ତିଶାଳୀ ରାଜାଙ୍କର ନାମ ନେଲେମାତ୍ରେ କାର୍ଯ୍ୟସିଦ୍ଧି ହୋଇଯାଏ ।' ୧୪ ।

ମୁଁ କହିଲି, 'ସେ କଥା କଅଣ' । ପକ୍ଷୀମାନେ କହିଲେ—

## କଥା-୩

ଥରେ ବର୍ଷାଋତୁରେ ମଧ୍ୟ ବର୍ଷା ନ ହେବାରୁ ଗୋଟିଏ ଦଳ ହସ୍ତୀ ତୃଷାରେ ଅଧୀର ହୋଇ ଯୂଥପତିଙ୍କୁ କହିଲେ, "ପ୍ରଭୁ, ଆମର ଜୀବନରକ୍ଷାର ଉପାୟ କାହିଁ ? କ୍ଷୁଦ୍ର ଜୀବମାନଙ୍କର ମଧ୍ୟ ସ୍ନାନ କରିବା ପାଇଁ ଜଳ ନାହିଁ । ଆମେ ସ୍ନାନର ସ୍ଥାନ ଅଭାବରୁ ମୃତତୁଲ୍ୟ; ଅନ୍ଧପରି ହେଲୁଣି । କେଉଁଠାକୁ ଯିବା ?'' ତତ୍ପରେ ଗଜରାଜ ଅଳ୍ପ ଦୂର ଯିବାପରେ ସେମାନଙ୍କୁ ନିର୍ମଳ ଜଳର ଗୋଟିଏ ହ୍ରଦ ଦେଖାଇ ଦେଲା ।

କିଛି ଦିନ ପରେ ହ୍ରଦର ନିକଟରେ ଥିବା କ୍ଷୁଦ୍ର ଶଶକମାନେ ହସ୍ତୀମାନଙ୍କ ପଦାଘାତରେ ଚୂର୍ଣ୍ଣୀଭୂତ ହେବାକୁ ଲାଗିଲେ । ଅନନ୍ତର ଶିଳୀମୁଖ ନାମକ ଗୋଟିଏ ଶଶକ ଚିନ୍ତା କଲା, 'ଏହି ହାତୀପଲ ତୃଷାର୍ତ୍ତ ହୋଇ ପ୍ରତ୍ୟହ ଏଠାକୁ ଆସିବେ; ତାହା ହେଲେ ଆମର କୁଳ ଧ୍ୱଂସ ପାଇଯିବ ।'

ତହୁଁ ବିଜୟ ନାମକ ଏକ ବୃଦ୍ଧ ଶଶକ କହିଲା, "ତୁମେମାନେ ଦୁଃଖ କରନାହିଁ । ମୁଁ ଏହାର ପ୍ରତୀକାର କରୁଛି ।" ତତ୍ପରେ ସେହି ବୃଦ୍ଧ ଶଶକ ପ୍ରତୀକାର କରିବ ବୋଲି ପ୍ରତିଜ୍ଞା କରି ଗଲା । ଯାଉ ଯାଉ ସେ ବିଚାର କଲା, "ମୁଁ ଯୂଥପତି ନିକଟକୁ ଯାଇ କିପରି କଥାବାର୍ତ୍ତା କରିବ ? କାରଣ—

ସ୍ପୃଶନ୍ନପି ଗଜୋ ହନ୍ତି ଜିଘ୍ରନ୍ନପି ଭୁଜଙ୍ଗମଃ ।
ପାଳୟନ୍ନପି ଭୂପାଳଃ ପ୍ରହସନ୍ନପି ଦୁର୍ଜନଃ । ୧୫ ।

ଛୁଇଁବା ମାତ୍ରେ ହାତୀ ପ୍ରାଣ ନିଏ, ଶୁଙ୍ଘିବା ମାତ୍ରେ ସାପ ପ୍ରାଣ ନିଏ; ପାଳନ ନାମରେ ରାଜା ପ୍ରାଣ ନିଏ; ଦୁର୍ଜନ ହସୁଥିଲେ ମଧ୍ୟ ପ୍ରାଣ ନିଏ । ୧୫ ।

ଅତଏବ ମୁଁ ପର୍ବତଶିଖରକୁ ଯାଇ ଯୂଥପତି ସଙ୍ଗେ କଥାବାର୍ତ୍ତା କରିବ ।" ଏହିପରି ବିଚାରି ସେ ପର୍ବତ ଶିଖରରୁ ଯୂଥପତିକୁ ଡାକିବାରୁ ସେ ପଚାରିଲା, "ତୁମେ କିଏ ? କେଉଁଠାରୁ ଆସିଛ ?"

ଶଶକ କହିଲା, "ମୁଁ ଗୋଟିଏ ଶଶକ । ମୋତେ ଭଗବାନ୍ ଚନ୍ଦ୍ର ତୁମ ପାଖକୁ ପଠାଇ ଅଛନ୍ତି ।" ଯୂଥପତି କହିଲା, "କେଉଁ କାର୍ଯ୍ୟରେ ପଠାଇଛନ୍ତି କୁହ ।" ବିଜୟ କହିଲା—

"ଉଦ୍ୟତେଷ୍ୱପି ଶସ୍ତ୍ରେଷୁ ଦୂତୋ ବଦତି ନାଽନ୍ୟଥା ।
ସଦୈବାଽବଧ୍ୟଭାବେନ ଯଥାର୍ଥସ୍ୟ ହି ବାଚକଃ । ୧୬ ।

ନିଜ ଉପରେ ଅସ୍ତ୍ର ଉଦ୍ୟତ ଥିଲେହେଁ ଦୂତ କଦାପି ମିଥ୍ୟା କହେ ନାହିଁ; ଦୂତ ସର୍ବଦା ଅବଧ୍ୟ ହୋଇଥିବାରୁ ସେ ସର୍ବଦା ସତ୍ୟ କଥାହିଁ କହିଥାଏ । ୧୭ ।

ତେଣୁ ମୁଁ ସେହି ଭଗବାନ୍ ଚନ୍ଦ୍ରଙ୍କ ଆଦେଶ କହୁଛି; ଶୁଣ । ଏହି ଶଶକମାନେ ହେଉଛନ୍ତି ଏ ଚନ୍ଦ୍ରସରୋବରର ରକ୍ଷକ । ତୁମେ ସେମାନଙ୍କୁ ବିତାଡ଼ିତ କରି ଅନ୍ୟାୟ କରିଅଛ । ଆମେ ସେହି ଶଶକମାନଙ୍କର ଚିରଦିନ ରକ୍ଷକ । ସେଥିପାଇଁ ମୁଁ ଶଶାଙ୍କ ନାମରେ ପ୍ରସିଦ୍ଧ ।

ଦୂତ ଏହା କହିବାରୁ ଯୂଥପତି ଭୀତ ହୋଇ କହିଲା, 'ହେ ଦୂତ ! ଅଜ୍ଞାନବଶତଃ ମୁଁ ଏପରି କରିଛି । ଆଉ କେବେ ସେଠାକୁ ଯିବି ନାହିଁ ।'

ଦୂତ କହିଲା, "ଯଦି ଏହା ହୋଇଥାଏ, ତେବେ ଏହି ପୁଷ୍କରିଣୀରେ କ୍ରୋଧରେ କମ୍ପମାନ ଭଗବାନ୍ ଚନ୍ଦ୍ରଙ୍କୁ ପ୍ରଣାମ କରି ତାଙ୍କୁ ସନ୍ତୁଷ୍ଟ କରି ଯାଅ ।"

ସେ ରାତିରେ ଶଶକ ଯୂଥପତିକୁ ନେଇ ଜଳ ମଧ୍ୟରେ କମ୍ପମାନ ଚନ୍ଦ୍ର ବିମ୍ବକୁ ଦେଖାଇ ପ୍ରଣାମ କରାଇଲା । ଶଶକ କହିଲା, "ଦେବ, ଏ ଗଜପତି ଅଜ୍ଞାନରେ ଏହି ଅପରାଧ କରିଛି । ତେଣୁ ତାକୁ କ୍ଷମା ଦିଅନ୍ତୁ । ସେ ଆଉ କେବେ ଏପରି କାର୍ଯ୍ୟ କରିବନାହିଁ ।" ଏହା କହି ଶଶକ ଚାଲିଗଲା । ଏହି ହେତୁରୁ—ଶକ୍ତିଶାଳୀ ରାଜାଙ୍କର ନାମ ନେଲେ ମାନେ କାର୍ଯ୍ୟସିଦ୍ଧି ହୋଇଯାଏ ବୋଲି ମୁଁ କହିଥିଲି ।

ତତ୍ପରେ ମୁଁ କହିଲି "ଆମର ପ୍ରଭୁ ରାଜହଂସ ମହାପ୍ରତାପୀ, ଅତି ବଳବାନ୍ । ସେ ସାମାନ୍ୟ ରାଜ୍ୟର କଥା କଣ, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନି ପୁରର ରାଜା ହେବାର ଯୋଗ୍ୟ ।"

ପକ୍ଷୀମାନେ କହିଲେ, "ଆରେ ଦୁଷ୍ଟ ! ତୁ ଆସି କାହିଁକି ଆମ ରାଜ୍ୟରେ ଚରୁଛୁ ?" ଏହା କହି ସେମାନେ ମୋତେ ସେମାନଙ୍କ ରାଜା ଚିତ୍ରବର୍ଣ୍ଣ ପାଖକୁ ନେଇଗଲେ । ତପୂରେ ରାଜାଙ୍କ ଆଗରେ ମୋତେ ଦେଖାଇ ତାହାଙ୍କୁ ପ୍ରଣାମ କରି କହିଲେ, "ହେ ଦେବ, ଶୁଣିବା ହେଉ; ଏ ଦୁଷ୍ଟ ଆମ ରାଜ୍ୟକୁ ଆସି ଏଠାରେ ଚରୁଛି, ତଥାପି ଆପଣଙ୍କର ନିନ୍ଦା କରୁଛି ।"

ରାଜା ପଚାରିଲେ, "ଏ କିଏ ? କେଉଁଠାରୁ ଆସିଛି ?" ସେମାନେ ଉତ୍ତର କଲେ, "ଏ ହେଉଛି ହିରଣ୍ୟଗର୍ଭ ନାମକ ରାଜହଂସର ଜଣେ ଅନୁଚର; କର୍ପୂରଦ୍ଵୀପରୁ ଆସିଛି ।"

ତାର ମନ୍ତ୍ରୀ ଗୃଧ୍ର ମୋତେ ପଚାରିଲା, "ତମ ସେଠାରେ ମୁଖ୍ୟମନ୍ତ୍ରୀ କିଏ ?" ମୁଁ ଉତ୍ତର କଲି, "ସର୍ବଶାସ୍ତ୍ରପାରଦର୍ଶୀ ସର୍ବଜ୍ଞ ନାମକ ଚକ୍ରବାକ ।"

ଗୃଧ୍ର କହିଲା, "ଠିକ୍ କଥା; ସେ କଅଣ ସେହି ଦେଶରେ ଜନ୍ମ ? କାରଣ,

ସ୍ୱଦେଶଜଂ, କୁଳାଚାରବିଶୁଦ୍ଧମୁପଧାଶୁଚିମ୍ ।
ମନ୍ତ୍ରଜ୍ଞମବ୍ୟସନିନଂ, ବ୍ୟଭିଚାରବିବର୍ଜିତମ୍ । ୧୭ ।
ଅଧୀତବ୍ୟବହାରାର୍ଥଂ, ମୌଳଂ, ଖ୍ୟାତଂ, ବିପଶ୍ଚିତମ୍
ଅର୍ଥସ୍ୟୋତ୍ପାଦକଂ ଚୈବ, ବିଦଧ୍ୟାନ୍ମନ୍ତ୍ରିଣଂ ନୃପଃ । ୧୮ ।

ଯିଏ ଆପଣା ରାଜ୍ୟରେ ଜାତ, କୁଳୀନ, ଶୁଦ୍ଧାଚାର, ଧର୍ମ-ପରୀକ୍ଷାରେ ଉତ୍ତୀର୍ଣ୍ଣ, ମନ୍ତ୍ରଣା ବ୍ୟାପାରରେ ଦକ୍ଷ, ବ୍ୟସନରହିତ, ବ୍ୟଭିଚାରରହିତ, ବ୍ୟବହାରକୁଶଳ, ଅଭିଜାତ, ପ୍ରସିଦ୍ଧ, ପଣ୍ଡିତ, ଅର୍ଥୋପାର୍ଜନରେ ନିପୁଣ, ତାହାକୁ ମନ୍ତ୍ରୀପଦରେ ନିଯୁକ୍ତ କରିବା ରାଜାଙ୍କର କର୍ତ୍ତବ୍ୟ ।" ୧୭-୧୮ ।

ଇତ୍ୟବସରରେ ଶୁକ କହିଲା, "ହେ ରାଜନ୍, କର୍ପୂରଦ୍ୱୀପ ପ୍ରଭୃତି ଶ୍ରେଷ୍ଠ ଶ୍ରେଷ୍ଠ ଦ୍ୱୀପ ଜମ୍ବୁଦ୍ୱୀପର ଅନ୍ତର୍ଗତ । ତେଣୁ ସେଠାରେ ମଧ୍ୟ ଆପଣଙ୍କର ଆଧିପତ୍ୟ ଅଛି ।" ତହୁଁ ରାଜା କହିଲେ, "ହଁ, ସେ କଥା ଠିକ୍ । କାରଣ—

ରାଜା, ମତ୍ତଃ, ଶିଶୁଶ୍ଚୈବ ପ୍ରମଦା, ଧନଗର୍ବିତଃ ।
ଅପ୍ରାପ୍ୟମପି ବାଞ୍ଛନ୍ତି କିଂ ପୁନର୍ଲଭ୍ୟତେଽପି ଯତ୍ । ୧୯ ।

ରାଜା, ଉନ୍ମାଦଗ୍ରସ୍ତ ଲୋକ, ଶିଶୁ, ରମଣୀ ଓ ଧନଗର୍ବିତ ଲୋକ—ଏମାନେ ଅଲଭ୍ୟ ବସ୍ତୁକୁ ମଧ୍ୟ କାମନା କରିଥାନ୍ତି । ଯେଉଁ ବସ୍ତୁ ଲବ୍ଧ କରାଯାଇପାରେ ତାହା କଥା ଆଉ କଅଣ କହିବା ?" ୧୯ ।

ତହୁଁ ମୁଁ କହିଲି, "ଯଦି କେବଳ କହିଦେବା ଦ୍ୱାରା ସ୍ୱାମିତ୍ୱ ପ୍ରମାଣିତ ହୁଏ, ତେବେ ଜମ୍ବୁଦ୍ୱୀପରେ ମଧ୍ୟ ଆମ ରାଜା ହିରଣ୍ୟଗର୍ଭଙ୍କର ସ୍ୱାମିତ୍ୱ ଅଛି ।" ଶୁକ କହିଲା, "ତେବେ ଏହାର କପରି ନିର୍ଣ୍ଣୟ ସମାଧାନ ହେବ ?" ମୁଁ "କହିଲି, ସଂଗ୍ରାମ ଦ୍ୱାରା ।"

ମୟୂରରାଜ ହସି ହସି କହିଲେ, "ଯାଅ, ତୁମର ପ୍ରଭୁଙ୍କୁ ଯୁଦ୍ଧ ପାଇଁ ପ୍ରସ୍ତୁତ କର ।" ମୁଁ କହିଲି, "ଆପଣ ନିଜର ଦୂତ ପଠାନ୍ତୁ ।" ରାଜା କହିଲେ, "ଦୌତ୍ୟ କାର୍ଯ୍ୟରେ କିଏ ଯିବ ? କାରଣ ଦୂତ ଏହିପରି ହେବା ଉଚିତ—

ଭକ୍ତୋଗୁଣୀ ଶୁଚିର୍ଦକ୍ଷଃ ପ୍ରଗଲ୍ଭୋଽବ୍ୟସନୀ କ୍ଷମୀ ।
ବ୍ରାହ୍ମଣଃ ପରମର୍ମଜ୍ଞୋ ଦୂତଃ ସ୍ୟାତ୍ ପ୍ରତିଭାନବାନ୍ । ୨୦ ।

ଦୂତ ଭକ୍ତ, ଗୁଣବାନ୍, ସଚ୍ଚରିତ୍ର, ଦକ୍ଷ, ବାକ୍‌ପଟୁ, ବ୍ୟସନରହିତ, କ୍ଷମାଶୀଳ, ଅନ୍ୟର ଅନ୍ତର କଥା ବୁଝିବାରେ କୁଶଳ ଓ ପ୍ରତିଭାବାନ୍ ବ୍ରାହ୍ମଣ ହେବା ଉଚିତ ।" ୨୦ ।

ଗୃଧ୍ର କହିଲା, "ଅନେକ ଦୂତ ଅଛନ୍ତି; କିନ୍ତୁ ଜଣେ ବ୍ରାହ୍ମଣଙ୍କୁ ଦୂତରୂପେ ନିଯୁକ୍ତ କରିବାକୁ ହେବ । କାରଣ—

ପ୍ରସାଦଂ କୁରୁତେ ପତ୍ୟୁଃ ସମ୍ପତ୍ତିଂ ନାଽଭିବାଞ୍ଛତି ।
କାଳିମା କାଳକୂଟସ୍ୟ ନାଽପୈତୀଶ୍ୱରସଙ୍ଗମାତ୍ । ୨୧ ।

ବ୍ରାହ୍ମଣ ସ୍ୱାମିଙ୍କୁ ପ୍ରସନ୍ନ ରଖେ, ସମ୍ପତ୍ତିକୁ ଲୋଭ କରେନାହିଁ । ଶିବଙ୍କ ସହବାସ ପାଇ ମଧ୍ୟ କାଳକୂଟ ବିଷର କାଳିମା ଦୂର ହୁଏନାହିଁ । ଅର୍ଥାତ୍ ବ୍ରାହ୍ମଣ ରାଜାଙ୍କ ଧନ ସମ୍ପତ୍ତି ଭିତରେ ରହିଥିଲେ ହେଁ ନିଜର ନିର୍ଲୋଭ ସ୍ୱଭାବ ତ୍ୟାଗ କରେ ନାହିଁ ।" ୨୧ ।

ରାଜା କହିଲେ, "ତାହା ହେଲେ ଆମ ଶୁକ ଯାଆନ୍ତୁ । ଶୁକ, ତୁମେ ଏହା ସହିତ ଯାଇ ସେଠାରେ ଆମର ଅଭିଳାଷ କହିବ ।" ଶୁକ କହିଲା, "ସ୍ୱାମୀଙ୍କ ଯାହା ଆଦେଶ । କିନ୍ତୁ ଏ ବକ ବଡ଼ ଦୁଷ୍ଟ । ତେଣୁ ତାହା ସଙ୍ଗରେ ଯିବି ନାହିଁ । କଥିତ ଅଛି—

ଖଳଃ କରୋତି ଦୁର୍ବୃତ୍ତଂ ନୂନଂ ଫଳତି ସାଧୁଷୁ
ଦଶାନନୋଽହରତ୍ ସୀତାଂ ବନ୍ଧନଂ ସ୍ୟାନ୍ମହୋଦଧେଃ ।୨୨ ।

ଖଳ ଲୋକ ଦୁଷ୍କର୍ମ କରେ; କିନ୍ତୁ ତାର ଫଳ ସାଧୁ ଲୋକଙ୍କୁ ଭୋଗିବାକୁ ହୁଏ । ରାବଣ ସୀତାଙ୍କୁ ହରଣ କଲା; କିନ୍ତୁ ବନ୍ଧନ ହେଲା ସମୁଦ୍ରର । ୨୨ । କଥିତ ଅଛି—

ନ ସ୍ଥାତବ୍ୟଂ ନ ଗନ୍ତବ୍ୟଂ ଦୁର୍ଜନେନ ସମଂ କ୍ୱଚିତ୍ ।
କାକସଙ୍ଗାଦ୍ଧତୋ ହଂସସ୍ତିଷ୍ଠନ୍ ଗଚ୍ଛଂଶ୍ଚ ବର୍ତ୍ତକଃ । ୨୩ ।

ଦୁର୍ଜନ ସଙ୍ଗରେ ରହିବା ଉଚିତ ନୁହେଁ କି କୌଣସି ସ୍ଥାନକୁ ଯିବା ଉଚିତ ନୁହେଁ । କାକଙ୍କ ସଙ୍ଗରେ ରହିଥିବାରୁ ହଂସ ଓ ସଙ୍ଗରେ ଯାଇଥିବାରୁ ବତକ ପ୍ରାଣ ହରାଇଥିଲେ ।" ୨୩ ।

ରାଜା ପଚାରିଲେ, "ସେ କଥା କଅଣ ?" ଶୁକ କହିଲା—

## କଥା-୪

ଉଜ୍ଜୟିନୀକୁ ଯାଇଥିବା ନିର୍ଜନ ପଥପାର୍ଶ୍ୱରେ ଗୋଟିଏ ପ୍ଲକ୍ଷ (ପର୍କଟୀ) ବୃକ୍ଷ ଥିଲା । ସେହି ବୃକ୍ଷରେ ଗୋଟିଏ କାକ ଓ ଗୋଟିଏ ହଂସ ବାସ କରୁଥିଲେ । ଏକଦା ଗ୍ରୀଷ୍ମ ସମୟରେ ଜଣେ ପଥିକ ସେହି ଗଛତଳେ ଧନୁଶର ରଖିଦେଇ ଶୋଇଲା । କିଛି ସମୟପରେ ତାହାର ମୁଖ ଉପରୁ ଗଛର ଛାଇ ଅପସରି ଗଲା । ସୂର୍ଯ୍ୟ କିରଣ ତାହାର ମୁହଁରେ ପଡ଼ୁଥିବାର ଦେଖି ବୃକ୍ଷରେ ଥିବା ପୁଣ୍ୟଶୀଳ ପଚରିତ ରାଜହଂସ ଦୟାକରି ନିଜର ପକ୍ଷ ଦୁଇଟି ବିସ୍ତାର କରି ପୁଣି ତାହା ମୁଖ ଉପରେ ଛାୟା କଲା । ତହୁଁ ନିର୍ଶ୍ଚିନ୍ତ ନିଦ୍ରାସୁଖ ଭୋଗ କରି ପଥଶ୍ରମ ହେତୁ ପରିଶ୍ରାନ୍ତ ସେହି ପଥିକର ମୁଖ ମେଲା ହୋଇଗଲା ।

ଅନ୍ୟର ସୁଖ ଦେଖିବାରେ ଅସହିଷ୍ଣୁ କାକ ଦୁର୍ଜନ ସ୍ୱଭାବ ହେତୁ ପଥିକର ମୁଖରେ ବିଷ୍ଠା ତ୍ୟାଗ କରି ପଳାଇଗଲା । ତତ୍ପରେ ପଥିକ ଯେତେବେଳେ ଉଠି ଉପରକୁ ଚାହିଁଲା ସେତେବେଳେ ସେ ହଂସକୁ ଦେଖିଲା ଓ ତାହାକୁ ଶର ଦ୍ୱାରା ବଧ କଲା । ଏଣୁ ମୁଁ କହୁଥିଲି—ଦୁର୍ଜନ ସଙ୍ଗରେ ରହିବା ଉଚିତ ନୁହେଁ, ଇତ୍ୟାଦି । ପ୍ରଭୁ, ବର୍ତ୍ତକ କଥା ମଧ କହୁଛି ଶୁଣନ୍ତୁ—

## କଥା-୫

ଗୋଟିଏ ବୃକ୍ଷରେ କାକ ଓ ବର୍ତ୍ତକ ଏକତ୍ର ସୁଖରେ ବାସ କରୁଥିଲେ । ଥରେ ଭଗବାନ୍ ଗରୁଡ଼ଙ୍କ ଉଦ୍ଦେଶ୍ୟରେ ସବୁ ପକ୍ଷୀ ସମୁଦ୍ର କୂଳକୁ ଚାଲିଲେ । କାକ ସଙ୍ଗରେ ବର୍ତ୍ତକ ଚାଲିଲା । ଜଣେ ଗୋପାଳ ମୁଣ୍ଡ ଉପରେ ଦଧିଭାଣ୍ଡ ରଖି ଯାଉଥିଲା । କାକ ବାରମ୍ବାର

ଉଡ଼ିଆସି ସେଥିରୁ ଦହି ଖାଉଥିଲା । ଯେତେବେଳେ ଗୋପାଳ ଦଧିଭାଣ୍ଡକୁ ତଳେ ରଖି ଦେଇ ଉପରକୁ ଚାହିଁଲା, ସେତେବେଳେ କାକ ଓ ବର୍ତ୍ତକ ଦୁହିଁଙ୍କୁ ଦେଖିଲା । ଗୋପାଳ ତାକୁ ଦେଖିଲାଣି ବୋଲି ଜାଣିପାରି କାକ ଉଡ଼ି ପଳାଇଲା । ବର୍ତ୍ତକ ସହଜେ ନିର୍ଦ୍ଦୋଷ, ପୁଣି ଧୀର ଗତିରେ ଯାଉଥିଲା । ଗୋପାଳ ବର୍ତ୍ତକକୁ ଧରି ମାରି ପକାଇଲା । ଏହି ହେତୁରୁ ମୁଁ କହୁଥିଲି—ଦୁର୍ଜନ ସଙ୍ଗରେ କୌଣସି ସ୍ଥାନକୁ ଯିବା ଉଚିତ ନୁହେଁ ଇତ୍ୟାଦି ।

ତହୁଁ ମୁଁ କହିଲି, "ଭାଇ ଶୁକ ! ଏପରି କଅଣ କହୁଛ ? ମୋ ପକ୍ଷରେ ମହାରାଜ ଯେପରି, ତୁମେ ମଧ୍ୟ ସେହିପରି ।" ଶୁକ କହିଲା, "ତାହା ହୋଇପାରେ, କିନ୍ତୁ—

> ଦୁର୍ଜନୈରୁଚ୍ୟମାନାନି ସମ୍ମତାନି ପ୍ରିୟାଣ୍ୟପି ।
> ଅକାଳକୁସୁମାନୀବ ଭୟଂ ସଂଜନୟନ୍ତି ହି । ୨୪ ।

ଦୁର୍ଜନର ରୁଚିକର, ଅଭୀଷ୍ଟ ଓ ପ୍ରିୟକଥା ମଧ୍ୟ ଅକାଳଜାତ ପୁଷ୍ପପରି ଭୟ ଜାତ କରାଇଥାଏ । ୨୪ । ତୁମ କଥାରୁ ହିଁ ତୁମର ଦୁଷ୍ଟ ପ୍ରକୃତି ଜଣା ପଡ଼ୁଛି, ଏ ଦୁଇଜଣ ରାଜାଙ୍କର ବିଗ୍ରହର ମୂଳ କାରଣ ହେଉଛି, ତୁମର କଥା ।

> ପ୍ରତ୍ୟକ୍ଷେଽପି କୃତେ ଦୋଷେ ମୂର୍ଖଃ ସାନ୍ତ୍ୱେନ ତୁଷ୍ୟତି
> ରଥକାରୋ ନିଜାଂ ଭାର୍ଯ୍ୟାଂ ସଜାରାଂ ଶିରସାଽକରୋତ୍ । ୨୫ ।

ପ୍ରତ୍ୟକ୍ଷରେ ଦୋଷ ଦେଖି ମଧ୍ୟ ମୂର୍ଖ ସାନ୍ତ୍ୱନା ବାକ୍ୟରେ ସନ୍ତୁଷ୍ଟ ହୋଇଯାଏ । ( ଯେପରି ) ରଥକାର (ବଢ଼େଇ) ଜାରପୁରୁଷ ସହ ଏକତ୍ରଥିବା ଅବସ୍ଥାରେ ନିଜର ଭାର୍ଯ୍ୟାକୁ ଦେଖି ମଧ୍ୟ ନିଜ ମୁଣ୍ଡ ଉପରେ ବସାଇଥିଲା ।" ୨୫ ।

ରାଜା ପଚାରିଲେ, "ଏ କଥା କିପରି ହେଲା ?" ଶୁକ କହିଲା—

## କଥା-୬

ଯୌବନଶ୍ରୀ ନଗରରେ ମନ୍ଦମତି ନାମରେ ଜଣେ ବଢ଼େଇ ଥିଲା । ସେ ଜାଣିଥିଲା ଯେ ତାର ସ୍ତ୍ରୀ ବ୍ୟଭିଚାରିଣୀ । କିନ୍ତୁ ଜାରପୁରୁଷ ସହିତ ତାଙ୍କୁ ସେ କେବେ ସ୍ୱଚକ୍ଷୁରେ ଦେଖି ନ ଥିଲା । ଦିନେ ସେ ବଢ଼େଇ 'ଆଜି ଅନ୍ୟ ଗ୍ରାମକୁ ଯାଉଛି' ବୋଲି କହି ଘରୁ ଚାଲି ଗଲା । କିଛିଦୂର ଯିବାପରେ ସେ ପୁଣି ନିଜ ଘରକୁ ଫେରି ଆସି ପଲଙ୍କତଳେ ଲୁଚି ବସିଲା । ଆଜି ବଢ଼େଇ ଅନ୍ୟଗ୍ରାମକୁ ଯାଇଛି ବୋଲି ବିଶ୍ୱାସ କରି ସେ ଜାରପୁରୁଷ ସନ୍ଧ୍ୟାବେଳକୁ ଉପସ୍ଥିତ ହେଲା । ଜାର ସହିତ ବିହାର କଲାବେଳେ ସେ ସ୍ତ୍ରୀ ପଲଙ୍କ ତଳେ ଥିବା ସ୍ୱାମୀର ଦେହର କୌଣସି ଅଂଶ ଅନୁଭବ କରି ସ୍ୱାମୀ କପଟାଚରଣ କରିଥିବାର ବୁଝିପାରି ନିତାନ୍ତ ବିଷଣ୍ଣ ହୋଇ ରହିଲା । ତହୁଁ ଜାର କହିଲା, 'ତୁମେ ଆଜି ମୋ ସହିତ ମନଦେଇ ବିହାର କରୁନାହଁ କାହିଁକି ? ତୁମେ ବିସ୍ମିତ ହୋଇଥିଲା ପରି ବୋଧ ହେଉଛି ।' ତହୁଁ ସେ କହିଲା, "ତୁମେ କଅଣ ଜାଣିନାହଁ ଯେ କୁମାରୀବସ୍ଥାରୁ ଯାହାଙ୍କ ସଙ୍ଗେ ମୋର ସଖ୍ୟ, ଯିଏ ମୋର ପ୍ରାଣେଶ୍ୱର, ସେହି ମୋର ପତି ଆଜି ଅନ୍ୟ ଗ୍ରାମକୁ ଯାଇଛନ୍ତି । ତାଙ୍କ ବିନା ଏ ଜନପୂର୍ଣ୍ଣ ନଗର ମୋତେ ନିର୍ଜନ ଅରଣ୍ୟ ପରି ବୋଧ ହେଉଅଛି; କଅଣ ହେବ କେଜାଣି ? ପର ଜାଗାରେ ସେ ଆଜି କଅଣ ଖାଇଥିବେ ? କେଉଁଠାରେ ଶୋଇଥିବେ ? ଏହି କଥା ଭାବି ମୋର ହୃଦୟ ବିଦୀର୍ଣ୍ଣ ହୋଇ ଯାଉଅଛି ।"

ଜାର ପୁରୁଷ କହିଲା, "ସେ ରଥକାର ତୁମର ଏତେଦୂର ସ୍ନେହର ପାତ୍ର ?"

ବଢ଼େଇର ସ୍ତ୍ରୀ କହିଲା, "ହେ ଅଧମ ! କଅଣ କହୁଛ ? ଶୁଣ—

ପରୁଷାଣ୍ୟପି ଯା ଉକ୍ତା ଦୃଷ୍ଟା ଯା କ୍ରୋଧଚକ୍ଷୁଷା
ସୁପ୍ରସନ୍ନମୁଖୀ ଭର୍ତ୍ତୁଃ ସା ନାରୀ ଧର୍ମଭାଜନମ୍ । ୨୬ ।

ସ୍ୱାମୀଠାରୁ କଠୋର ବାକ୍ୟରେ ଓ ରୋଷପୂର୍ଣ୍ଣ ଚକ୍ଷୁର ଦୃଷ୍ଟିରେ ମଧ୍ୟ ଯେଉଁ ନାରୀର ମୁଖ ପ୍ରସନ୍ନ ରହେ, ସେ ଧର୍ମ-ଭାଗିନୀ ହୁଏ । ୨୬ ।

ନଗରସ୍ଥୋ ବନସ୍ଥୋ ବା ପାପୋ ବା ଯଦିବା ଶୁଚିଃ
ଯାସାଂ ସ୍ତ୍ରୀଣାଂ ପ୍ରିୟୋ ଭର୍ତ୍ତା ତାସାଂ ଲୋକା ମହୋଦୟାଃ । ୨୭ ।

ପତି ନଗରରେ ରହିଥାନ୍ତୁ ବା ବନରେ ରହିଥାନ୍ତୁ; ପାପାସକ୍ତ ହୁଅନ୍ତୁ ବା ପବିତ୍ର ହୁଅନ୍ତୁ ତାଙ୍କୁ ଯେଉଁ ସ୍ତ୍ରୀ ପ୍ରେମ କରେ, ସେ ଉତ୍ତମ ଲୋକ (ସ୍ୱର୍ଗାଦି) ପ୍ରାପ୍ତ ହୁଏ । ୨୭ ।

ଭର୍ତ୍ତା ହି ପରମଂ ନାର୍ଯ୍ୟା ଭୂଷଣଂ ଭୂଷଣୈର୍ବିନା
ଏଷା ବିରହିତା ତେନ ଶୋଭନାଽପି ନ ଶୋଭତେ । ୨୮ ।

ଅଳଙ୍କାର ନ ଥିଲେ ସୁଦ୍ଧା ସ୍ୱାମୀ ହେଉଛି ନାରୀର ପ୍ରଧାନ ଭୂଷଣ; ନାନା ଅଳଙ୍କାରରେ ମଣ୍ଡିତ ହୋଇଥିଲେହେଁ ପତିହୀନା ରମଣୀ ସୁନ୍ଦରୀ ହୋଇ ନ ପାରେ । ୨୮ ।

ତୁମେ ହେଉଛ ଜାର; ପାପବୁଦ୍ଧି । ମନର ଚଞ୍ଚଳତା ହେତୁ ପୁଷ୍ପତାମ୍ବୁଳ ପରି କେବେ ସ୍ତ୍ରୀକୁ ଭୋଗ କର; କେବେ ଅବା କର-ନାହିଁ । ସେ ହେଉଛନ୍ତି ମୋର ସ୍ୱାମୀ । ମୋତେ ବିକି କରି ଦେବା ପାଇଁ, ଦେବତା ବା ବ୍ରାହ୍ମଣଙ୍କୁ ମୋତେ ଦାନ କରିଦେବା ପାଇଁ

ତାଙ୍କର ଅଧିକାର ଅଛି । ଅଧିକ କଅଣ କହିବ ? ମୋର ପ୍ରତିଜ୍ଞା, ସେ ବଞ୍ଚି ଥିବାଯାଏ ମୁଁ ବଞ୍ଚି ରହିବ; ସେ ମଲେ ତାଙ୍କ ସହିତ ମରି ସତୀ ହେବ । ଯେହେତୁ—

ତିସ୍ରଃ କୋଟ୍ୟୋଽର୍ଦ୍ଧକୋଟୀ ଚ ଯାନି ଲୋମାନି ମାନବେ ।
ତାବତ୍କାଳଂ ବସେତ୍ ସ୍ୱର୍ଗେ ଭର୍ତ୍ତାରଂ ଯୋଽନୁଗଚ୍ଛତି । ୨୯ ।

ଯେଉଁ ସ୍ତ୍ରୀ ସ୍ୱାମୀଙ୍କ ମୃତ୍ୟୁପରେ ସତୀ ହୁଏ ସେ ମନୁଷ୍ୟ ଦେହରେ ଯେତେ ସଂଖ୍ୟାରେ ଲୋମ ଅଛି ଅର୍ଥାତ୍ ସାଢ଼େ ତିନକୋଟି ବର୍ଷ ପର୍ଯ୍ୟନ୍ତ ସ୍ୱର୍ଗରେ ବାସ କରେ । ୨୯ । ପୁଣି—

ବ୍ୟାଳଗ୍ରାହୀ ଯଥା ବ୍ୟାଳଂ ବଳାଦୁଦ୍ଧରତେ ବଳାତ୍ ।
ତଦ୍ୱଦ୍‌ଭର୍ତ୍ତାରମାଦାୟ ସ୍ୱର୍ଗଲୋକେ ମହୀୟତେ । ୩୦ ।

ସାପୁଆ କେଳା ଯେପରି ବଳପୂର୍ବକ ସାପକୁ ଗାତରୁ ଟାଣି ଆଣି ନେଇଯାଏ, ସେହିପରି ସତୀ ନାରୀ ସ୍ୱାମୀକୁ ବଳପୂର୍ବକ ନରକରୁ ସଙ୍ଗରେ ସ୍ୱର୍ଗପୁରକୁ ନେଇ ପୂଜାପାଏ । ୩୦ ।

ଚିତୌ ପରିଷ୍ୱଜ୍ୟ ବିଚେତନଂ ପତିଂ,
ପ୍ରିୟା ହି ଯା ମୁଞ୍ଚତି ଦେହମାତ୍ମନଃ ।
କୃତ୍ୱାପି ପାପଂ ଶତଲକ୍ଷମପ୍ୟସୌ,
ପତିଂ ଗୃହୀତ୍ୱା ସୁରଲୋକମାପ୍ନୁୟାତ୍ । ୩୧ ।

ଚିତାନଳରେ ମୃତ ପତିଙ୍କୁ ଆଲିଙ୍ଗନ କରି ଯେଉଁ ନାରୀ ଦେହତ୍ୟାଗ କରେ ସେ ଲକ୍ଷ ଲକ୍ଷ ପାପ କରିଥିଲେହେଁ ପତିଙ୍କୁ ଘେନି ସ୍ୱର୍ଗଲୋକ ପ୍ରାପ୍ତ ହୁଏ । ୩୧ । ପୁଣି—

ଯସ୍ମୈ ଦଦ୍ୟାତ୍ ପିତା ତ୍ୱେନାଂ ଭ୍ରାତା ବାଽନୁମତେ ପିତୁଃ
ତଂ ଶୁଶ୍ରୂଷେତ ଜୀବନ୍ତଂ ସଂସ୍ଥିତଂ ଚ ନ ଲଙ୍ଘୟେତ୍ । ୩୨ ।

ସ୍ତ୍ରୀକୁ ପିତା ବା ପିତାଙ୍କ ଅନୁମତିରେ ଭ୍ରାତା ଯାହା ହାତରେ ଅର୍ପଣ କରିଥାନ୍ତି, ତାଙ୍କୁ ଜୀବନ କାଳରେ ସେବା କରିବା ଓ ମୃତ୍ୟୁ ପରେ ମଧ୍ୟ ତାଙ୍କୁ ନ ଛାଡ଼ିବା ଉଚିତ ।'' ୩୨ ।

ଏ ସବୁ କଥା ଶୁଣି ସେହି ମନ୍ଦମତି ରଥକାର ମନେ ମନେ ବିଚାରିଲା—''ଏପରି ପ୍ରିୟବାଦିନୀ ସ୍ୱାମୀବତ୍ସଳା ସ୍ତ୍ରୀ ପାଇ ମୁଁ ଧନ୍ୟ ।'' ଏପରେ ଜାରପୁରୁଷ ଓ ନିଜର ପତ୍ନୀ ସହିତ ପଲଙ୍କଟିକୁ ମୁଣ୍ଡରେ ରଖି ଆନନ୍ଦରେ ନାଚିବାକୁ ଲାଗିଲା । ଏହି ହେତୁରୁ ମୁଁ 'ପ୍ରତ୍ୟକ୍ଷରେ ଦୋଷ ଦେଖି ମଧ୍ୟ ମୂର୍ଖ' ଇତ୍ୟାଦି କହୁଥିଲି ।

ଏହାପରେ ରାଜା ଚିତ୍ରବର୍ଣ୍ଣ ମୋର ଯଥାବିଧି ସତ୍କାର କରି ମୋତେ ବିଦାୟ ଦେଲେ । ଶୁକ ମଧ୍ୟ ମୋର ପଛେ ପଛେ ଆସୁ-ଅଛି । ଏହି ସବୁ କଥା ବୁଝି ବର୍ତ୍ତମାନ କଅଣ କରିବାକୁ ହେବ ବିଚାର କରନ୍ତୁ ।

ଚକ୍ରବାକ ହସି ହସି କହିଲା, "ଦେବ ! ଏ ବକ ବିଦେଶ ଯାଇ ମଧ୍ୟ ଯଥାଶକ୍ତି ରାଜକାର୍ଯ୍ୟ କରିଅଛି । (ଅର୍ଥାତ୍ ଦୁଷ୍ଟ ସ୍ୱଭାବ ହେତୁ ରାଜ୍ୟକୁ ଏକ ଯୁଦ୍ଧରେ ଲିପ୍ତ କରିଅଛି ।) କିନ୍ତୁ ହେ ରାଜନ୍, ମୂର୍ଖ ଲୋକଙ୍କର ଏହାହିଁ ହେଉଛି ସ୍ୱଭାବ । ଯେହେତୁ—

ଶତଂ ଦଦ୍ୟାନ୍ନ ବିବଦେଦିତି ବିଜ୍ଞସ୍ୟ ସମ୍ମତମ୍ ।
ବିନା ହେତୁମପି ଦ୍ୱନ୍ଦ୍ୱମେତନ୍ମୂର୍ଖସ୍ୟ ଲକ୍ଷଣମ୍ । ୩୩ ।

ବିଜ୍ଞ ଲୋକଙ୍କର ମତ ହେଉଛି, ଶହେ ଦେବ ପଛକେ, କାହାରି ସଙ୍ଗେ ବିବାଦ କରିବ ନାହିଁ । କିନ୍ତୁ ବିନା କାରଣରେ କଳହ କରିବା ହେଉଛି ମୂର୍ଖର ଲକ୍ଷଣ ।''

ରାଜା କହିଲେ—ଗତ ବିଷୟକୁ ନେଇ ଏପରି ତିରସ୍କାର କରି-ବାରେ ଫଳ ନାହିଁ । ଏବେ ଉପସ୍ଥିତ ବିଷୟର ବିଚାର କର ।

ଚକ୍ରବାକ କହିଲା, "ରାଜନ୍, ମୁଁ ଏକାନ୍ତରେ କହିବି । କାରଣ—

ବର୍ଣ୍ଣାକାରପ୍ରତିଧ୍ୱାନୈର୍ନେତ୍ରବକ୍ତ୍ରବିକାରତଃ ।
ଅପ୍ୟୂହନ୍ତି ମନୋ ଧୀରାସ୍ତସ୍ମାଦ୍ରହସି ମନ୍ତ୍ରୟେତ୍ । ୩୪ ।

ରଙ୍ଗ, ଆକାର, ଶବ୍ଦ, ଆଖି ଓ ମୁହଁର ବିକାରରୁ ଜ୍ଞାନୀଲୋକେ ମନର ଭାବକୁ ଜାଣିପାରନ୍ତି । ତେଣୁ ଏକାନ୍ତରେ ମନ୍ତ୍ରଣା କରିବା ଉଚିତ ।" ୩୪ ।

ତହୁଁ ରାଜା ଓ ମନ୍ତ୍ରୀ ଏ ଦୁହେଁ ସେଠାରେ ରହିଲେ, ଅନ୍ୟ ସମସ୍ତେ ଅନ୍ୟତ୍ର ଚାଲିଗଲେ । ଚକ୍ରବାକ କହିଲା, "ଦେବ ! ମୋର ଅନୁମାନ ହେଉଛି, କୌଣସି ରାଜକର୍ମଚାରୀର ପ୍ରରୋଚନାରେ ବକ ଏହା କରିଅଛି । କାରଣ—

ବୈଦ୍ୟାନାମାତୁରଃ ଶ୍ରେୟାନ୍, ବ୍ୟସନୀ ଯୋ ନିୟୋଗିନାମ୍ ।
ବିଦୁଷାଂ ଜୀବନଂ ମୂର୍ଖଃ, ସଦ୍‌ବର୍ଣ୍ଣୋ ଜୀବନଂ ସତାମ୍ । ୩୫ ।

ବୈଦ୍ୟମାନଙ୍କ ପକ୍ଷରେ ରୋଗୀ, ରାଜକର୍ମଚାରୀଙ୍କ ପକ୍ଷରେ ବ୍ୟସନୀ ରାଜା, ପଣ୍ଡିତମାନଙ୍କ ପକ୍ଷରେ ମୂର୍ଖ ଓ ସାଧୁଲୋକଙ୍କ ପକ୍ଷରେ ବ୍ରାହ୍ମଣ କ୍ଷତ୍ରିୟାଦି ଉଚ୍ଚ ବର୍ଣ୍ଣର ଲୋକ ହେଉଛନ୍ତି ଜୀବନ-ସ୍ୱରୂପ ।" ୩୫ ।

ରାଜା କହିଲେ, "ସେ ଯାହାହେଉ, କାରଣ ପରେ ନିର୍ଣ୍ଣୟ କରାଯିବ । ବର୍ତ୍ତମାନ କଅଣ କରିବା ତାହା ନିରୂପଣ କରାଯାଉ ।"

ଚନ୍ଦ୍ରବାକ କହିଲା, "ରାଜନ୍, ପ୍ରଥମେ ଆମର ଗୁପ୍ତଚର ସେଠାକୁ ପଠାନ୍ତୁ । ତାହାପରେ ଶତ୍ରୁର ବିଗ୍ରହ, ତାହାର ସବଳତା ବା ଦୁର୍ବଳତା ଆମ୍ଭେମାନେ ଜାଣିପାରିବା । ଯେହେତୁ—

ଭବେତ୍ ସ୍ୱ-ପର-ରାଷ୍ଟ୍ରାଣାଂ କାର୍ଯ୍ୟାଽକାର୍ଯ୍ୟାଽବଲୋକନେ ।
ଚାରଶ୍ଚକ୍ଷୁ ମହୀଭର୍ତ୍ତୁର୍ଯସ୍ୟ ନାସ୍ତ୍ୟନ୍ଧ ଏବ ସଃ । ୩୬ ।

ସ୍ୱରାଷ୍ଟ୍ରର ତଥା ପର ରାଷ୍ଟ୍ରର କାର୍ଯ୍ୟାକାର୍ଯ୍ୟ ଦେଖିବା ନିମନ୍ତେ ଚାର ହେଉଛି ରାଜାଙ୍କର ଚକ୍ଷୁ । ଯେଉଁ ରାଜାଙ୍କର ଏହି ଚାରରୂପକ ଚକ୍ଷୁ ନ ଥାଏ ସେ ଅନ୍ଧତୁଲ୍ୟ ହୁଅନ୍ତି । ୩୬ ।

ସେ ଗୁପ୍ତଚର ମଧ୍ୟ ଅନ୍ୟ ଜଣେ ବିଶ୍ୱସ୍ତ ଲୋକକୁ ସଙ୍ଗରେ ନେଇ ଯାଉ । ଗୁପ୍ତଚର ନିଜେ ସେଠାରେ ରହିବ ଏବଂ ସେଠାରେ ଚାଲିଥିବା ମନ୍ତ୍ରଣା ଓ କାର୍ଯ୍ୟ ଗୋପନରେ ବୁଝିବା ପରେ ଅନ୍ୟ ଜଣକୁ ଏଠାକୁ ପଠାଇ ଦେବ । କଥିତ ଅଛି—

ତୀର୍ଥାଽଶ୍ରମ-ସୁରସ୍ଥାନେ ଶାସ୍ତ୍ରବିଜ୍ଞାନହେତୁନା ।
ତପସ୍ୱିବ୍ୟଞ୍ଜନୋପେତୈଃ ଖଚରୈଃ ସହ ସଂବସେତ୍ । ୩୭ ।

ପ୍ରଧାନ ଗୁପ୍ତଚର ପବିତ୍ର ସ୍ଥାନରେ, ଆଶ୍ରମ, ବା ଅନ୍ୟ ଦେବାଳୟରେ, ତପସ୍ୱୀ ବେଶ ଧାରଣ କରି ଶାସ୍ତ୍ର ବିଜ୍ଞାନ ଆଦି ଶିକ୍ଷା ଛଳରେ ନିଜର ସହାୟକ ଗୁପ୍ତଚରମାନଙ୍କ ସହ ବାସ କରିବା ଆବଶ୍ୟକ । ୩୭ ।

ଯେ ଜଳ ଓ ସ୍ଥଳରେ ବିଚରଣ କରିପାରେ ସେ ହେଉଛି, ଖେଚର । ତେଣୁ ଏହି ବକକୁ ସେହି କାର୍ଯ୍ୟରେ ନିଯୁକ୍ତ କରନ୍ତୁ । ସେହିପରି ଅନ୍ୟ ଏକ ବକ ତାହା ସଙ୍ଗରେ ଦ୍ୱିତୀୟ

ଗୁପ୍ତଚର ରୂପେ ଯାଉ । ତା ଘରର ପରିବାରବର୍ଗ ରାଜଦର-ବାରରେ ଆସି ରହନ୍ତୁ । କିନ୍ତୁ ଏ ସବୁ ଅତି ଗୁପ୍ତ ଭାବରେ କରି-ବାକୁ ହେବ । କାରଣ—

ଷଟ୍‌କର୍ଣ୍ଣୋ ଭିଦ୍ୟତେ ମନ୍ତ୍ରସ୍ତଥା ପ୍ରାପ୍ତଶ୍ଚ ବାର୍ତ୍ତୟା
ଇତ୍ୟାତ୍ମନା ଦ୍ୱିତୀୟେନ ମନ୍ତ୍ରଃ କାର୍ଯ୍ୟୋ ମହୀଭୃତା । ୩୮ ।

ଛଅ କାନରେ ପଡ଼ିଲେ କିମ୍ବା ସମ୍ବାଦ ଆକାରରେ ବୁଝା-ଗଲେ (ମନ୍ତ୍ରଭେଦ) ମନ୍ତ୍ରଣା ପ୍ରକାଶ ପାଇଯାଏ । ତେଣୁ ରାଜାଙ୍କର କର୍ତ୍ତବ୍ୟ ହେଉଛି, ସେ ସ୍ୱୟଂ ଅନ୍ୟ ଜଣେ ନିଜର ଲୋକ ସହିତ ମନ୍ତ୍ରଣା କରିବେ । ୩୮ । ଦେଖନ୍ତୁ—

ମନ୍ତ୍ରଭେଦେ ହି ଯେ ଦୋଷା ଭବନ୍ତି ପୃଥିବୀପତେଃ ।
ନ ଶକ୍ୟାସ୍ତେ ସମାଧାତୁମିତି ନୀତିବିଦାଂ ମତମ୍ । ୩୯ ।

(ମନ୍ତ୍ରଭେଦ ହେଲେ) ମନ୍ତ୍ରଣା ପ୍ରକାଶ ପାଇଲେ ରାଜାଙ୍କର ଯେଉଁ ସବୁ ଦୋଷ ହୁଏ, ସେସବୁ ସମାଧାନ କରି ହୁଏ ନାହିଁ । ଏହା ହେଉଛି ନୀତିଜ୍ଞମାନଙ୍କର ମତ ।" ୩୯ ।

ରାଜା ଚିନ୍ତା କରି କହିଲେ, "ଗୋଟିଏ ଉତ୍ତମ ଗୁପ୍ତଚର ମୋତେ ମିଳିଛି ।" ମନ୍ତ୍ରୀ କହିଲେ, "ତେବେ ତ ସଂଗ୍ରାମରେ ବିଜୟ ଲାଭ ହେବ ।"

ଏଥି ମଧ୍ୟରେ ପ୍ରତିହାରୀ ପ୍ରବେଶ କରି ପ୍ରଣାମପୂର୍ବକ ଜଣା-ଇଲା, "ଦେବ, ଜମ୍ବୁଦ୍ୱୀପରୁ ଆସିଥିବା ଶୁକ ରାଜଦ୍ୱାରରେ ଅପେକ୍ଷା କରିଛନ୍ତି ।" ରାଜା ଚକ୍ରବାକ ଆଡ଼କୁ ଚାହିଁଲେ ।

ଚକ୍ରବାକ କହିଲା, "ତାଙ୍କୁ ନେଇ ଅତିଥିଶାଳାରେ ରଖାଇ ଦିଅ । ପରେ ଆଣି ଦର୍ଶନ କରାଇବ ।" ପ୍ରତିହାରୀ 'ଯେ ଆଜ୍ଞା'

କହି ଶୁକକୁ ଅନ୍ତଃପୁରକୁ ନେଇଗଲା । ରାଜା କହିଲେ, "ଯୁଦ୍ଧ ଏବେ ଉପସ୍ଥିତ ।" ଚକ୍ରବାକ କହିଲା, "ତଥାପି ହଠାତ୍ ଯୁଦ୍ଧ କରିବା ଉଚିତ ନୁହେଁ । କାରଣ—

ସ କିଂ ଭୃତ୍ୟଃ, ସ କିଂ ମନ୍ତ୍ରୀ, ଯ ଆଦାବେବ ଭୂପତିମ୍ ।
ଯୁଦ୍ଧୋଦ୍ୟୋଗଂ, ସ୍ୱଭୂତ୍ୟାଗଂ ନିର୍ଦ୍ଦିଶତ୍ୟବିଚାରିତମ୍ । ୪୦ ।

ଯିଏ ପ୍ରଥମରୁ ରାଜାଙ୍କୁ ଯୁଦ୍ଧୋଦ୍ୟମ କରିବା ପାଇଁ ବା ନିଜ ସ୍ଥାନ ତ୍ୟାଗ କରିବା ପାଇଁ ଅବିଚାରିତଭାବରେ ଉପଦେଶ ଦିଏ, ସେ କି ଭୃତ୍ୟ ? ସେ କି ମନ୍ତ୍ରୀ ? ୪୦ । ପୁଣି—

ବିଜେତୁଂ ପ୍ରଯତେତାଽରୀନ୍ନ ଯୁଦ୍ଧେନ କଦାଚନ
ଅନିତ୍ୟୋ ବିଜୟୋ ଯସ୍ମାଦ୍ ଦୃଶ୍ୟତେ ଯୁଧ୍ୟମାନୟୋଃ । ୪୧ ।

ଯୁଦ୍ଧଦ୍ୱାରା ଶତ୍ରୁକୁ ଜିଣିବାର ପ୍ରୟାସ କରିବା କଦାପି ଉଚିତ ନୁହେଁ; କାରଣ ଯୁଦ୍ଧରେ ଉଭୟ ପକ୍ଷକୁ ବିଜୟ ଅନିଶ୍ଚିତ ବୋଲି ଦେଖା ଯାଇଥାଏ । ୪୧ । ପୁନଶ୍ଚ—

ସାମ୍ନା, ଦାନେନ, ଭେଦେନ, ସମସ୍ତୈରଥବା ପୃଥକ୍ ।
ସାଧିତୁଂ ପ୍ରଯତେତାଽରୀନ୍, ନ ଯୁଦ୍ଧେନ କଦାଚନ । ୪୨ ।

ଶତ୍ରୁକୁ ଯୁଦ୍ଧଦ୍ୱାରା ବଶୀଭୂତ କରିବାକୁ ଉଦ୍ୟମ ନ କରି ସାମ, ଦାନ ଓ ଭେଦ ଏ ତିନି ନୀତିକୁ ଏକତ୍ର ବା ଗୋଟିଏ ଗୋଟିଏ ପ୍ରୟୋଗ କରି ଶତ୍ରୁକୁ ବଶ କରିବାକୁ ଉଦ୍ୟମ କରିବା ଉଚିତ । ୪୨ । ଏହାଛଡ଼ା—

ସର୍ବ ଏବ ଜନଃ ଶୂରୋ ହ୍ୟନାସାଦିତବିଗ୍ରହଃ ।
ଅଦୃଷ୍ଟପରସାମର୍ଥ୍ୟଃ ସଦର୍ପଃ କୋ ଭବେନ୍ନ ହି । ୪୩ ।

ଯୁଦ୍ଧ ଆସି ନଥିବା ଯାଏ ସମସ୍ତେ ନିଜକୁ ଜଣେ ଜଣେ ବୀର ମନେ କରିଥାନ୍ତି । ଶତ୍ରୁର ବଳ ନ ଦେଖି କିଏ ଅବା ଅଭିମାନୀ ହୋଇ ନ ଥାଏ ? ୪୩ । ପୁଣି—

ନ ତଥୋତ୍ଥାପ୍ୟତେ ଗ୍ରାବା ପ୍ରାଣିଭିର୍ଦାରୁଣା ଯଥା ।
ଅଲ୍ପୋପାୟାନ୍ମହାସିଦ୍ଧିରେତନ୍ମନ୍ତ୍ରଫଳଂ ମହତ୍ । ୪୪ ।

ଲୋକେ ପଥରକୁ କାଠ ସାହାଯ୍ୟରେ ଯେପରି ସହଜରେ ଉପରକୁ ଉଠାଇ ପାରନ୍ତି; ଅନ୍ୟ ଉପାୟରେ ସେହିପରି ପାରନ୍ତି ନାହିଁ । ତେଣୁ ସ୍ୱଳ୍ପ ପ୍ରୟାସରେ ମହାନ୍ ସିଦ୍ଧି ଲାଭ କରିବା ହେଉଛି ମନ୍ତ୍ରର (ମନ୍ତ୍ରଣାର) ମହାନ୍ ଫଳ । ୪୪ । କିନ୍ତୁ ଯୁଦ୍ଧ ଉପସ୍ଥିତ ହେବାର ଦେଖିଲେ ଉପାୟ କରିବାକୁ ହେବ । କାରଣ—

ଯଥା କାଳକୃତୋଦ୍ୟୋଗାତ୍ କୃଷିଃ ଫଳବତୀ ଭବେତ୍ ।
ତଦ୍ୱନ୍ନୀତିରିୟଂ ଦେବ, ଚିରାତ୍ ଫଳତି ନ କ୍ଷଣାତ୍ । ୪୫ ।

ଯେପରି ସମୟ ଅନୁସାରେ ଉଦ୍ୟୋଗ କଲେ ପରେ କୃଷିରୁ ଫଳ ମିଳେ, ସେହିପରି ଏହି ନୀତିକୁ ଯଥା ସମୟରେ ପାଳନ କଲେ ପରେ ଫଳ ମିଳିବ, ହଠାତ୍ ମିଳିବ ନାହିଁ । ୪୫ । ଏହାଛଡ଼ା—

ଦୂରେ ଭୀରୁତ୍ୱମାସନ୍ନେ ଶୂରତା ମହତୋ ଗୁଣଃ ।
ବିପତ୍ତୌ ହି ମହାଂଲ୍ଲୋକେ ଧୀରତ୍ୱମଧିଗଚ୍ଛତି । ୪୬ ।

ବିପଦକୁ ଦୂରରୁ ଆସୁଥିବା ଦେଖି ଭୟ ପ୍ରକାଶ କରିବା ଉଚିତ, କିନ୍ତୁ ବିପଦ ନିକଟକୁ ଆସିଗଲେ ନିଜର ପରାକ୍ରମ ଦେଖାଇବା ହେଉଛି ମହତ୍ ଲୋକର ଗୁଣ । ସେଥିପାଇଁ ମହାନ୍ ଲୋକମାନେ ବିପଦବେଳେ ଧୈର୍ଯ୍ୟ ଅବଲମ୍ବନ କରିଥାନ୍ତି । ୪୬ । ଏହାଛଡ଼ା—

ପ୍ରତ୍ୟୂହଃ ସର୍ବସିଦ୍ଧୀନାମୁତ୍ତାପଃ ପ୍ରଥମଃ କିଳ ।
ଅତିଶୀତଳମପ୍ୟମ୍ଭଃ କିଂ ଭିନତ୍ତି ନ ଭୂଭୃତଃ । ୪୭ ।

କ୍ରୋଧ ହେଉଛି ସକଳ କାର୍ଯ୍ୟରେ ସଫଳତାର ପ୍ରଥମ ପ୍ରତି-ବନ୍ଧକ । ଜଳ ଅତି ଶୀତଳ ହେଲେ ମଧ୍ୟ କଅଣ ପର୍ବତକୁ ବିଦାରି ଦିଏ ନାହିଁ ? ଅର୍ଥାତ୍ କ୍ରୋଧ ପରିବର୍ତ୍ତେ କ୍ଷାନ୍ତିଦ୍ୱାରା ଭଲ ଫଳ ହୁଏ । ୪୭ ।

ବଳିନା ସହ ଯୋଦ୍ଧବ୍ୟମିତି ନାଽସ୍ତି ନିଦର୍ଶନମ୍ ।
ତଦ୍ଯୁଦ୍ଧଂ ହସ୍ତିନା ସାର୍ଦ୍ଧଂ ନରାଣାମୃତ୍ୟୁମାବହେତ୍ । ୪୮ ।

ବଳବାନ୍ ସହିତ ଯୁଦ୍ଧ କରିବା ନୀତିସମ୍ମତ ନୁହେଁ । ମନୁଷ୍ୟ ପକ୍ଷରେ ହସ୍ତୀ ସଙ୍ଗେ ଯୁଦ୍ଧ କରିବାକୁ ଯିବାର ଅର୍ଥ ନିଜର ମୃତ୍ୟୁକୁ ଡାକି ଆଣିବା ଛଡ଼ା ଅନ୍ୟ କିଛି ନୁହେଁ । ୪୮ । ପୁଣି—

ସ ମୂର୍ଖଃ କାଳମପ୍ରାପ୍ୟ ଯୋଽପକର୍ତ୍ତରି ବର୍ତ୍ତତେ ।
କଳିର୍ବଳବତା ସାର୍ଦ୍ଧଂ କୀଟପକ୍ଷୋଦ୍ଗମୋ ଯଥା । ୪୯ ।

ଉପଯୁକ୍ତ ସମୟ ଉପସ୍ଥିତ ହେବା ପୂର୍ବରୁ ଯିଏ ଶତ୍ରୁ ସହିତ ଯୁଦ୍ଧ ଆରମ୍ଭ କରିଦିଏ, ସେ ମୂର୍ଖ । ବଳବାନ୍ ଶତ୍ରୁ ସଙ୍ଗେ ଯୁଦ୍ଧ କରିବା କୀଟମାନଙ୍କର ପକ୍ଷ ଉଠିଲାପରି । ( ଅର୍ଥାତ୍ ଉଇ, ଜହ୍ନା ପ୍ରଭୃତି କୀଟମାନଙ୍କ ଦେହରେ ଡେଣା ଲାଗିଲେ ସେମାନେ ଅଳ୍ପ-ଦିନରେ ମଲାପରି ବଳବାନ୍ ଶତ୍ରୁ ସହିତ ଯୁଦ୍ଧ କଲେ ମୃତ୍ୟୁମୁଖରେ ପଡ଼ିବାକୁ ହେବ । ) ୪୯ ।

କୌର୍ମଂ ସଙ୍କୋଚମାସ୍ଥାୟ ପ୍ରହାରମପି ମର୍ଷୟେତ୍ ।
ପ୍ରାପ୍ତକାଳେ ତୁ ନୀତିଜ୍ଞ ଉତ୍ତିଷ୍ଠେତ୍ କ୍ରୂରସର୍ପବତ୍ । ୫୦ ।

ଯେପରି କଚ୍ଛପ ସମୟରେ ନିଜ ଅଙ୍ଗକୁ ସଙ୍କୁଚିତ କରି ପ୍ରହାର ସହିଯାଏ, ନୀତିଜ୍ଞ ସେହିପରି ସମୟ ଅନୁସାରେ ସବୁ ସହିଯାଏ; କିନ୍ତୁ ଉପଯୁକ୍ତ ସମୟ ଉପସ୍ଥିତ ହେଲେ କ୍ରୁଦ୍ଧ ସର୍ପ ଫଣା ଟେକି ଉଠିଲା ପରି ନୀତିଜ୍ଞ ଲୋକ ଯଥାସମୟରେ ପରାକ୍ରମ ପ୍ରକାଶ କରେ । ୫୦ ।

ମହତ୍ୟଲ୍ପେଽପ୍ୟୁପାୟଜ୍ଞଃ ସମମେବ ଭବେତ୍ କ୍ଷମଃ ।
ସମୁନ୍ମୂଲୟିତୁଂ ବୃକ୍ଷାଂସ୍ତୃଣାନୀବ ନଦୀରୟଃ । ୫୧ ।

ନଦୀର ସ୍ରୋତ ବଡ଼ ବଡ଼ ବୃକ୍ଷ ତଥା ସାମାନ୍ୟ ତୃଣକୁ ସମାନ ଭାବରେ ଉନ୍ମୂଳିତ କଲାପରି ଉପାୟ ଜାଣିଥିବା ଲୋକ କି ବଡ଼ କି ସାନ ଉଭୟ ଶତ୍ରୁ ପ୍ରତି ସମାନ ଆଚରଣ କରିବାକୁ ସମର୍ଥ ହୋଇଥାଏ । ୫୧ ।

ତେଣୁ ଆମର ଦୁର୍ଗ ସଜ୍ଜିତ ହେବାଯାଏ ଏହି ଦୂତ ଶୁକକୁ ଏଠାରେ ରଖାଇଥିବା । କାରଣ—

ଏକଃ ଶତଂ ଯୋଧୟତି ପ୍ରାକାରସ୍ଥୋ ଧନୁର୍ଦ୍ଧରଃ ।
ଶତଂ ଶତସହସ୍ରାଣି ତସ୍ମାଦ୍ ଦୁର୍ଗଂ ବିଶିଷ୍ୟତେ । ୫୨ ।

ପ୍ରାଚୀର ଉପରେ ରହି ଜଣେ ଧନୁର୍ଦ୍ଧାରୀ ଯୋଦ୍ଧା ଶହେ ଜଣ ବୀରଙ୍କ ସଙ୍ଗେ ଯୁଦ୍ଧ କରିପାରେ; ଆଉ ଶହେ ଜଣ ଧନୁର୍ଦ୍ଧାରୀ ବୀର ଏକ ଲକ୍ଷ ବୀରଙ୍କ ସଙ୍ଗେ ଯୁଦ୍ଧ କରି ପାରନ୍ତି । ତେଣୁ ଦୁର୍ଗର ବିଶେଷ ଗୁରୁତ୍ୱ ଅଛି । ୫୨ । ପୁଣି—

ଅଦୁର୍ଗବିଷୟଃ କସ୍ୟ ନାଽରେଃ ପରିଭବାସ୍ପଦମ୍ ।
ଅଦୁର୍ଗୋଽନାଶ୍ରୟୋ ରାଜା ପୋତଚ୍ୟୁତ ମନୁଷ୍ୟବତ୍ । ୫୩ ।

ଦୁର୍ଗବିହୀନ ରାଜ୍ୟ କେଉଁ ଶତ୍ରୁଦ୍ୱାରା ପରାଜିତ ନ ହୁଏ ? ଦୁର୍ଗ ତଥା ଆଶ୍ରୟହୀନ ରାଜା ଜାହାଜରୁ ଖସି ପଡ଼ିଥିବା ମନୁଷ୍ୟ ସଦୃଶ । ୫୩ ।

ଦୁର୍ଗଂ କୁର୍ବନ୍ ମହାଖାତମୁଚ୍ଚପ୍ରାକାର ସଂଯୁତମ୍ ।
ସଯନ୍ତ୍ରଂ, ସଜଳଂ, ଶୈଳ-ସରିନ୍ମରୁ-ବନାଽଶ୍ରୟମ୍ । ୫୪ ।

ଦୁର୍ଗ ବୃହତ୍ ପରିଖାଦ୍ୱାରା ବେଷ୍ଟିତ ଓ ଉଚ୍ଚ ପ୍ରାଚୀରଯୁକ୍ତ ହେବା ଉଚିତ । ସେଥିରେ ଯୁଦ୍ଧର ଅସ୍ତ୍ରଶସ୍ତ୍ର ରହିଥିବ, ଜଳାଶୟ ଥିବ । ଏହା ପାହାଡ଼, ନଦୀ, ମରୁଭୂମି ବା ବନର ନିକଟରେ ପ୍ରସ୍ତୁତ ହେବା ବିଧେୟ । ୫୪ ।

ବିସ୍ତୀର୍ଣ୍ଣତାଽତିବୈଷମ୍ୟଂ, ରସଧାନ୍ୟେଧ୍ମସଂଗ୍ରହଃ
ପ୍ରବେଶଶ୍ଚାଽପସାରଶ୍ଚ ସପ୍ତୈତା ଦୁର୍ଗସମ୍ପଦଃ । ୫୫ ।

ବିଶାଳତା, ଦୁର୍ଗମତା, ଜଳ ସଂଗ୍ରହ, ଅଗ୍ନି ସଂଗ୍ରହ, ଇନ୍ଧନ ସଂଗ୍ରହ, ଗୋପନ ପ୍ରବେଶପଥ ଓ ଗୋପନ ନିର୍ଗମନ ପଥ—ଏହି ସାତୋଟି ହେଉଛି ଦୁର୍ଗର ସମ୍ପତ୍ତି ।" ୫୫ ।

ରାଜା କହିଲେ, "ଦୁର୍ଗର ଅନୁସନ୍ଧାନ ନିମନ୍ତେ କାହାକୁ ନିଯୁକ୍ତ କରିବା ଉଚିତ ହେବ ?" ଚକ୍ରବାକ କହିଲା—

ଯୋ ଯତ୍ରକୁଶଳଃ କାର୍ଯ୍ୟେ ତଂ ତତ୍ର ବିନିଯୋଜୟେତ୍
କର୍ମସ୍ୱଦୃଷ୍ଟକର୍ମା ଯଃ ଶାସ୍ତ୍ରଜ୍ଞୋଽପି ବିମୁହ୍ୟତି । ୫୬ ।

ଯିଏ ଯେଉଁ କାର୍ଯ୍ୟରେ ନିପୁଣ ତାକୁ ସେହି କାର୍ଯ୍ୟରେ ନିଯୁକ୍ତ କରିବା ଉଚିତ । କର୍ତ୍ତବ୍ୟ କର୍ମ ବିଷୟରେ ଯେ ଅନଭିଜ୍ଞ, ସେ ଶାସ୍ତ୍ରବେତ୍ତା ହୋଇଥିଲେ ମଧ୍ୟ କାର୍ଯ୍ୟକ୍ଷେତ୍ରରେ ବିମୂଢ଼ ହୋଇଯାଏ । ୫୬ ।

ତେଣୁ ସାରସକୁ ଡକାନ୍ତୁ ।" ତାହାଙ୍କୁ କଥାଗଲା । ସାରସ ଆସିବାରୁ ରାଜା ତାହାକୁ ଶୀଘ୍ର କହିଲେ, "ହେ ସାରସ, ତୁମେ ଶୀଘ୍ର ଗୋଟିଏ ଦୁର୍ଗର ଅନୁସନ୍ଧାନ କର ।"

ସାରସ ପ୍ରଣାମ କରି କହିଲା, "ମହାରାଜ, ବହୁଦିନରୁ ଗୋଟିଏ ସୁନ୍ଦରରୂପିତ ପୁଷ୍କରିଣୀ ଆମର ଦୁର୍ଗ ହୋଇ ରହିଅଛି । କିନ୍ତୁ ଏହି ପୁଷ୍କରିଣୀର ମଧ୍ୟସ୍ଥିତ ଦ୍ୱୀପରେ ଦ୍ରବ୍ୟ ସଂଗ୍ରହ କରି ରଖିବାକୁ ହେବ । ଯେହେତୁ—

ଧାନ୍ୟାନାଂ ସଂଗ୍ରହୋ ରାଜନ୍ନୁତ୍ତମଃ ସର୍ବସଂଗ୍ରହାତ୍
ନିକ୍ଷିପ୍ତଂ ହି ମୁଖେ ରତ୍ନଂ ନ କୁର୍ଯ୍ୟାତ୍ ପ୍ରାଣଧାରଣମ୍ । ୫୭ ।

ହେ ରାଜନ, ଅନ୍ୟ ସବୁ ଦ୍ରବ୍ୟର ସଂଗ୍ରହ ମଧ୍ୟରେ ଧାନ୍ୟ (ଖାଦ୍ୟ) ସଂଗ୍ରହ ହେଉଛି ସର୍ବୋତ୍ତମ; କାରଣ ମୁଖରେ ରତ୍ନ ଦେଲେ ପ୍ରାଣରକ୍ଷା ହୋଇ ପାରିବ ନାହିଁ; ( ଖାଦ୍ୟହିଁ ପ୍ରାଣରକ୍ଷା କରି-ପାରିବ । ) ୫୭ । ପୁଣି—

ଖ୍ୟାତଃ ସର୍ବରସାନାଂ ହି ଲବଣୋ ରସ ଉତ୍ତମଃ
ଗୃହୀତ୍ୱାତଂ ବିନା ତେନ ବ୍ୟଞ୍ଜନଂ ଗୋମୟାୟତେ । ୫୮ ।

ସବୁ ରସ ମଧ୍ୟରେ ଲବଣ ଉତ୍କୃଷ୍ଟ ରସ ବୋଲି ଖ୍ୟାତ । କାରଣ ଲବଣ ବିନା ବ୍ୟଞ୍ଜନ ଗୋମୟ ପରି ବୋଧ ହୁଏ ।" ୫୮ ।

ରାଜା କହିଲେ, "ଶୀଘ୍ର ଯାଇ ସମସ୍ତ ବ୍ୟବସ୍ଥା କର ।" ଏହି ସମୟରେ ପ୍ରତିହାରୀ ପୁନଶ୍ଚ ପ୍ରବେଶ କରି କହିଲା, "ଦେବ, ସିଂହଳ-ଦ୍ୱୀପରୁ ମେଘବର୍ଣ୍ଣ ନାମକ ଏକ ବାୟସ ସପରିବାର ଆସି ଦ୍ୱାର-ଦେଶରେ ଅପେକ୍ଷା କରିଅଛନ୍ତି । ସେ ଆପଣଙ୍କର ଦର୍ଶନ ଚାହାନ୍ତି ।"

ରାଜା କହିଲେ, କାକ ହେଉଛି ବୁଦ୍ଧିମାନ୍, ବହୁଦ୍ରଷ୍ଟା; "ତାକୁ ରଖିନେବା ଉଚିତ ହେବ।"

ଚକ୍ରବାକ କହିଲା, "ପ୍ରଭୁ, ସେ କଥା ଠିକ୍, କିନ୍ତୁ କାକ ହେଉଛି ସ୍ଥଳଚର, ଆମର ବିପକ୍ଷ । ତେଣୁ ଆମର ଶତ୍ରୁପକ୍ଷର ଲୋକକୁ କିପରି ନିଯୁକ୍ତ କରିବା ? କଥିତ ଅଛି—

ଆତ୍ମପକ୍ଷଂ ପରିତ୍ୟଜ୍ୟ ପରପକ୍ଷେଷୁ ଯୋ ରତଃ
ସ ପରୈର୍ହନ୍ୟତେ ମୂଢ଼ୋ ନୀଳବର୍ଣ୍ଣଶୃଗାଳବତ୍ । ୫୯ ।

ଯିଏ ନିଜ ପକ୍ଷ ପରିତ୍ୟାଗ କରି ଅପର ପକ୍ଷରେ ଯୋଗ ଦିଏ, ସେ ମୂର୍ଖ ନୀଳବର୍ଣ୍ଣ ଶୃଗାଳ ପରି ଶତ୍ରୁଦ୍ୱାରା ନିହତ ହୁଏ।" ୫୯ ।

ରାଜା ପଚାରିଲେ, "ସେ ନୀଳବର୍ଣ୍ଣ ଶୃଗାଳ କଥା କଅଣ ?" ମନ୍ତ୍ରୀ ଚକ୍ରବାକ କହିଲା—

## କଥା-୭

କୌଣସି ବନରେ ଗୋଟିଏ ଶୃଗାଳ ଥିଲା । ଦିନେ ସେ ନଗର ନିକଟରେ ସ୍ୱେଚ୍ଛାରେ ଭ୍ରମଣ କରୁ କରୁ ନୀଳରସପୂର୍ଣ୍ଣ ଗୋଟିଏ ଭାଣ୍ଡରେ ପଡ଼ିଗଲା । ସେହି ଭାଣ୍ଡରୁ ସେ ବାହାରି ଆସି ପାରିଲା ନାହିଁ । ତେଣୁ ସକାଳକୁ ସେ ନିଜକୁ ମୃତ ବୋଲି ଛଳନା କରି ପଡ଼ି ରହିଲା । ନୀଳଭାଣ୍ଡର ଅଧିକାରୀ ତାହାକୁ ମୃତ ମନେକରି ଭାଣ୍ଡରୁ ଟେକି ଆଣି ଦୂରକୁ ନେଇ ଫିଙ୍ଗାଇ ଦେଲା । ତହୁଁ ସେ ଶୃଗାଳ ପଳାଇଗଲା ।

ତତ୍ପରେ ସେ ବନକୁ ଯାଇ ନିଜର ନୀଳବର୍ଣ୍ଣକୁ ଦେଖି ଚିନ୍ତାକଲା—ମୁଁ ଏବେ ଉତ୍ତମ ବର୍ଣ୍ଣ ପାଇଛି । ତେବେ ମୁଁ କାହିଁକି

ନିଜର ଉତ୍କର୍ଷ (ଉନ୍ନତି) ସାଧନ କରିବ ନାହିଁ ? ଏହାପରେ ବଣରେ ସେ ଶୃଗାଳମାନଙ୍କୁ ଡାକି କହିଲା—ଭଗବତୀ ବନଦେବୀ ନିଜ ହସ୍ତରେ ସକଳପ୍ରକାର ଔଷଧି ଓ ରସଦ୍ୱାରା ମୋତେ ଏହି ବନ-ରାଜ୍ୟର ରାଜାରୂପେ ଅଭିଷିକ୍ତ କରିଅଛନ୍ତି । ମୋର ରଙ୍ଗକୁ ଦେଖ । ତେଣୁ ଆଜିଠାରୁ ତୁମେମାନେ ସମସ୍ତେ ମୋର ଆଦେଶ ଅନୁସାରେ କାର୍ଯ୍ୟ କରିବ ।

ଶୃଗାଳମାନେ ତାହାର ଏହି ବିଶିଷ୍ଟ ରଙ୍ଗ ଦେଖି ସାଷ୍ଟାଙ୍ଗ ପ୍ରଣିପାତ କରି କହିଲେ, "ମହାରାଜ ! ଆପଣଙ୍କର ଆଦେଶ ଶିରୋଧାର୍ଯ୍ୟ ।" ଏହିପରି କ୍ରମେ ସେହି ଶୃଗାଳ ଅରଣ୍ୟର ଜୀବ-ମାନଙ୍କ ଉପରେ ନିଜର ଆଧିପତ୍ୟ ପ୍ରତିଷ୍ଠା କଲା । ତହୁଁ ସେ ନିଜକୁ ସ୍ୱଜାତୀୟମାନଙ୍କଠାରୁ ବଡ଼ ମନେ କଲା । ବ୍ୟାଘ୍ର ସିଂହ ପ୍ରଭୃତି ଉତ୍ତମ ପରିଜନମାନଙ୍କୁ ପାଇ ରାଜସଭାରେ ଶୃଗାଳମାନଙ୍କୁ ଦେଖି ସେ ଲଜ୍ଜିତ ହୋଇ ସେମାନଙ୍କୁ ବାହାର କରିଦେଲା । ଏହି ହେତୁରୁ ବିଷଣ୍ଣ ହୋଇ ରହିଥିବା ଶୃଗାଳମାନଙ୍କୁ ଦେଖି ଗୋଟିଏ ବୃଦ୍ଧଶୃଗାଳ ପ୍ରତିଜ୍ଞା କରି କହିଲା—ଭାଇମାନେ, ତୁମେମାନେ ଦୁଃଖ କର ନାହିଁ । ଆମେମାନେ ପ୍ରକୃତ ତଥ୍ୟ ଜାଣୁ । ଏହି ମତିହୀନ ଶୃଗାଳ ଆମମାନଙ୍କୁ ନିଜ ନିକଟରୁ ଦୂର କରି ଦେଇଅଛି । ତେଣୁ ଯେପରି ତାର ବିନାଶ ହେବ, ତାହା କରିବ । ବ୍ୟାଘ୍ର ପ୍ରଭୃତି କେବଳ ଏହାର ବର୍ଣ୍ଣ ଦେଖି ପ୍ରତାରିତ ହୋଇ ଏହାକୁ ଶୃଗାଳ ବୋଲି ଜାଣି ନ ପାରି ରାଜା ବୋଲି ମନେ କରୁଅଛନ୍ତି । ତେଣୁ ଯେପରି ତାର ପରିଚୟ ପ୍ରକାଶ ପାଇବ ତାହା କରିବା । ମୁଁ ଯାହା କହୁଛି, ସେହିପରି କର । ସନ୍ଧ୍ୟା ସମୟରେ ସମସ୍ତେ ତାହା ନିକଟରେ ମହାଶବ୍ଦ କରି ରବିବା । ଜାତି-ସ୍ୱଭାବ ବଶତଃ ଆମର ଶବ୍ଦ ଶୁଣି ସେ ମଧ୍ୟ ଶବ୍ଦ କରିବ । କାରଣ—

ଯଃ ସ୍ୱଭାବୋ ଯସ୍ୟାଽସ୍ତି ସ ନିତ୍ୟଂ ଦୁରତିକ୍ରମଃ ।
ଶ୍ୱା ଯଦି କ୍ରିୟତେ ରାଜା ତତ୍ କିଂ ନାଽଶ୍ନାତ୍ୟୁପାନହମ୍ ।୭୦ ।

ଯାହାର ଯେଉଁ ସ୍ୱଭାବ ତାହା ଚିରସ୍ଥାୟୀ । ସେ କଦାପି ସେହି ସ୍ୱଭାବ ତ୍ୟାଗ କରି ପାରେ ନାହିଁ । କୁକୁରକୁ ଯଦି ରାଜା କରାଯାଏ, ତେବେ ସେ କଅଣ ଚମଡ଼ାର ଜୋତାକୁ କାମୁଡ଼ିବ ନାହିଁ ? ୭୦ ।

ତତ୍ପରେ ଶତ୍ରୁ ତାକୁ ଚିହ୍ନି ପାରି ବ୍ୟାଘ୍ର ତାହାକୁ ବଧ କରିବ । ଶୃଗାଳମାନେ ସେହିପରି କରିବାରୁ ବ୍ୟାଘ୍ର ଶୃଗାଳକୁ ଚିହ୍ନି ପାରି ତାକୁ ବଧ କଲା । କଥିତ ଅଛି—

ଛିଦ୍ରଂ ମର୍ମ ଚ ବୀର୍ଯ୍ୟଂ ଚ ସର୍ବଂ ବେତ୍ତି ନିଜୋରିପୁଃ
ଦହତ୍ୟନ୍ତର୍ଗତଶ୍ଚୈବ ଶୁଷ୍କଂ ବୃକ୍ଷମିବାଽନଳଃ । ୭୧ ।

ଯେଉଁ ଲୋକ ନିଜର (ଛିଦ୍ର) ଦୁର୍ବଳତା, ନିଜର (ମର୍ମ) ଗୁପ୍ତ କଥା, ନିଜର ବଳ ତଥା ନିଜର ମିତ୍ର ଓ ଶତ୍ରୁ ସମସ୍ତଙ୍କୁ ଭଲରୂପେ ଜାଣେ ସେ ଶତ୍ରୁ ମଧ୍ୟରେ ପ୍ରବେଶ କରି ଅଗ୍ନି ଶୁଷ୍କ ବୃକ୍ଷକୁ ଜାଳି ଦେଲା ପରି ତାକୁ ବିନାଶ କରେ । ୭୧ । ତେଣୁ ସିଏ ନିଜପକ୍ଷ ପରିତ୍ୟାଗ କରି—ଇତ୍ୟାଦି ମୁଁ କହିଥିଲି ।

ରାଜା କହିଲେ, "ତାହା ଠିକ ହେଲେ ହେଁ ତଥାପି ଏ କାକ ଦୂର ଦେଶରୁ ଆସିଛି । ଏଣୁ ତାକୁ ଆମ ସଙ୍ଗରେ ରଖିବା ବିଷୟ ବିଚାର କରିବା ଉଚିତ ।" ଚକ୍ରବାକ କହିଲା, "ଦେବ, ଦୂତ ପ୍ରେରଣ କରାଯାଇ ଅଛି, ଦୁର୍ଗ ମଧ୍ୟ ପ୍ରସ୍ତୁତ । ତେଣୁ ଶୁକକୁ ଏଠାକୁ ଡକାନ୍ତୁ । କିନ୍ତୁ ନିଜର ସୈନ୍ୟ ଆଦି ଦଳବଳ ସହିତ ଆପଣ ଦୂରରେ ରହି ତାହା ସଙ୍ଗେ କଥାବାର୍ତ୍ତା କରନ୍ତୁ । କାରଣ—

ନନ୍ଦଂ ଜଘାନ ଚାଣକ୍ୟସ୍ତୀକ୍ଷ୍ଣଦୂତପ୍ରୟୋଗତଃ
ତଦ୍ ଦୂରାନ୍ତରିତଂ ଦୂତଂ ପଶ୍ୟେଦ୍‌ବୀରସମନ୍ୱିତଃ । ୭୨ ।

ଚାଣକ୍ୟ ଛଦ୍ମବେଶଧାରୀ ଦୂତ ପ୍ରୟୋଗ କରି ନନ୍ଦରାଜାଙ୍କୁ ବଧ କରିଥିଲେ । ତେଣୁ ଆପଣ ଏହାଠାରୁ ଦୂରରେ ରହି ନିଜର ବୀରମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ ଏହାକୁ ଦେଖିବେ ।" ୭୨ ।

ତଦନନ୍ତର ସଭା କରି ରାଜହଂସ ଶୁକ ଓ କାକ ଦୁହିଁଙ୍କୁ ଡକାଇଲେ । ଅଭିମାନ ହେତୁ ମସ୍ତକ ଟିକିଏ ଉଚ୍ଚ କରି ଶୁକ ଦତ୍ତ ଆସନରେ ବସି କହିଲା, "ହେ ହିରଣ୍ୟଗର୍ଭ ! ମହାରାଜାଧିରାଜ ଶ୍ରୀମଦ୍ ଚିତ୍ରବର୍ଣ୍ଣ ତୁମ୍ଭକୁ ଆଦେଶ କରିଅଛନ୍ତି—'ଯଦି ନିଜ ଜୀବନରେ ବା ଧନରେ ପ୍ରୟୋଜନ ଥାଏ, ତେବେ ଶୀଘ୍ର ଆସି ମୋର ପାଦତଳେ ପ୍ରଣାମ କର । ନଚେତ୍ ରହିବା ପାଇଁ ଅନ୍ୟ ସ୍ଥାନ କଥା ଚିନ୍ତା କର ।"

ରାଜା କ୍ରୋଧରେ କହିଲେ, "ଆଃ, ଏହାର ଗଳାରେ ଧକ୍‌କା ଦେଇ ବାହାର କରିଦେବାକୁ କଅଣ କେହି ନାହାନ୍ତି ?" ତହୁଁ ମେଘବର୍ଣ୍ଣ କହିଲା, "ପ୍ରଭୁ, ଆଦେଶ ଦିଅନ୍ତୁ । ମୁଁ ଏହି ଦୁଷ୍ଟ ଶୁକକୁ ବଧ କରିବି ।" ସର୍ବଜ୍ଞ ନାମକ ଏକ ଚକ୍ରବାକ ରାଜା ଓ କାକ ଦୁହିଁଙ୍କୁ ସାନ୍ତ୍ୱନା ଦେଇ କହିଲା, "ଭଦ୍ର ! ସେପରି କରନ୍ତୁ ନାହିଁ; ଶୁଣନ୍ତୁ—

ନ ସା ସଭା ଯତ୍ର ନ ସନ୍ତି ବୃଦ୍ଧା-
ବୃଦ୍ଧା ନ ତେ ଯେନ ବଦନ୍ତି ଧର୍ମମ୍ ।
ଧର୍ମଃ ସ ନୋ ଯତ୍ର ନ ସତ୍ୟମସ୍ତି,
ସତ୍ୟଂ ନ ତଦ୍ ଯଚ୍ଛଳମଭ୍ୟୁପୈତି । ୭୩ ।

ଯହିଁରେ ବୃଦ୍ଧ ନ ଥାନ୍ତି, ସେ ସଭା ସଭା ନୁହେଁ; ଯେ ଧର୍ମ କଥା ନ କହନ୍ତି, ସେ ବୃଦ୍ଧ ବୃଦ୍ଧ ନୁହନ୍ତି; ଯହିଁରେ ସତ୍ୟ ନ ଥାଏ, ସେ ଧର୍ମ ଧର୍ମ ନୁହେଁ; ଯହିଁରେ ଛଳନା ଥାଏ, ସେ ସତ୍ୟ ସତ୍ୟ ନୁହେଁ । ୭୩ । କାରଣ ରାଜଧର୍ମ ହେଉଛି—

ଦୂତୋ ମ୍ଳେଚ୍ଛୋଽପ୍ୟବଧ୍ୟଃ ସ୍ୟାଦ୍ରାଜା ଦୂତମୁଖୋ ଯତଃ ।
ଉଦ୍ୟତେଷ୍ୱପି ଶସ୍ତ୍ରେଷୁ ଦୂତୋ ବଦତିନାଽନ୍ୟଥା । ୭୪ ।

ଜାତିରେ ମ୍ଳେଚ୍ଛ (ଅତିହୀନ) ହୋଇଥିଲେହେଁ ଦୂତ ହେଉଛି ଅବଧ୍ୟ, କାରଣ ରାଜାଙ୍କର ମୁଖ ହେଉଛି ଦୂତ । ତେଣୁ ଶସ୍ତ୍ର ଉଦ୍ୟତ ହୋଇଥିବାର ଦେଖି ମଧ୍ୟ ଦୂତ ମିଥ୍ୟା କହି ନ ପାରେ । ୭୪ । ପୁଣି—

ସ୍ୱାଽପକର୍ଷଂ ପରୋତ୍କର୍ଷଂ ଦୂତୋକ୍ତୈର୍ମନ୍ୟତେ ତୁ କଃ ?
ସଦୈବାଽବଧ୍ୟଭାବେନ ଦୂତଃ ସର୍ବଂ ହି ଜଳ୍ପତି । ୭୫ ।

ଦୂତ ମୁଖରୁ ନିଜର ଅପକର୍ଷ (ତୁଚ୍ଛତା) ଓ ଶତ୍ରୁର ଉତ୍କର୍ଷ (ଶ୍ରେଷ୍ଠତା) ଶୁଣି କେଉଁ ରାଜା ସେ କଥା ଉପରେ ଆସ୍ଥା ସ୍ଥାପନ କରେ ? ଦୂତ ସର୍ବଥା ଅବଧ୍ୟ ହୋଇଥିବାରୁ ସେ ଭଲ ମନ୍ଦ ସବୁ କଥା କହିପାରେ ।” ୭୫ ।

ତତ୍ପରେ ରାଜା ଓ କାକ ପ୍ରକୃତିସ୍ଥ ହେଲେ । ଶୁକ ଉଠି ଚାଲିଗଲା । ପରେ ଚକ୍ରବାକ ତାହାକୁ ଆଣି, ପ୍ରବୋଧ କରି, ସ୍ୱର୍ଣ୍ଣ-ମୁଦ୍ରିକା ପ୍ରଭୃତି ଦେଇ ନିଜ ଦେଶକୁ ପଠାଇ ଦେଲା । ଶୁକ ମଧ୍ୟ ବିନ୍ଧ୍ୟାଚଳକୁ ଯାଇ ନିଜ ରାଜା ଚିତ୍ରବର୍ଣ୍ଣଙ୍କୁ ପ୍ରଣାମ କଲା ।

ତାହାକୁ ଦେଖି ରାଜା ଚିତ୍ରବର୍ଣ୍ଣ ପଚାରିଲେ, “ଶୁକ, ସମ୍ବାଦ କଅଣ ? ସେ ଦେଶଟା କିପରି ?”

ଶୁକ କହିଲା, "ଦେବ, ସଂକ୍ଷେପରେ ସମ୍ବାଦ ହେଉଛି— ବର୍ତ୍ତମାନ ଯୁଦ୍ଧର ଆୟୋଜନ କରନ୍ତୁ । କର୍ପୂରଦ୍ୱୀପ ହେଉଛି ସ୍ୱର୍ଗପୁରର ଏକ ଅଂଶ ତୁଲ୍ୟ । ଏହାର ରାଜା ହିରଣ୍ୟ ଇନ୍ଦ୍ରସଦୃଶ । ଏହାର ବର୍ଣ୍ଣନା କରାଯାଇ ନ ପାରେ ।"

ତତ୍ପରେ ସକଳ ସଭାସଦଙ୍କୁ ଡକାଇ ରାଜା ମନ୍ତ୍ରଣା ଆରମ୍ଭ କଲେ । ରାଜା ସେମାନଙ୍କୁ କହିଲେ, "ବର୍ତ୍ତମାନ ଉପସ୍ଥିତ ଯୁଦ୍ଧରେ କଅଣ କର୍ତ୍ତବ୍ୟ ସେ ବିଷୟରେ ପରାମର୍ଶ ଦିଅ । କିନ୍ତୁ ଯୁଦ୍ଧ କରିବାକୁ ହିଁ ହେବ । କଥିତ ଅଛି—

ଅସନ୍ତୁଷ୍ଟା ଦ୍ୱିଜାନଷ୍ଟାଃ ସନ୍ତୁଷ୍ଟାଶ୍ଚ ମହୀଭୂଜଃ
ସଲଜ୍ଜା ଗଣିକା ନଷ୍ଟା ନିର୍ଲଜ୍ଜାଶ୍ଚ କୁଳାଙ୍ଗନାଃ । ୭୭ ।

ଅସନ୍ତୁଷ୍ଟ ବ୍ରାହ୍ମଣ,(ଯେତିକି ଅଛି, ସେତିକରେ) ସନ୍ତୁଷ୍ଟ ରାଜା, ଲଜ୍ଜାବତୀ ବେଶ୍ୟା ଓ ଲଜ୍ଜାହୀନା କୁଳସ୍ତ୍ରୀ—ଏମାନେ ଅବଶ୍ୟ ନଷ୍ଟ ହୁଅନ୍ତି ।" ୭୭ ।

ଏହା ଶୁଣି ଦୂରଦର୍ଶୀ ନାମକ ଏକ ଗୃଧ୍ର ମନ୍ତ୍ରୀ କହିଲା, "ମହାରାଜ, ଆପଦ୍‌ଗ୍ରସ୍ତ ହୋଇଥିବା ସମୟରେ ଯୁଦ୍ଧ କରିବା ଉଚିତ ନୁହେଁ ।" କାରଣ—

ମିତ୍ରାଽମାତ୍ୟ ସୁହୃଦ୍‌ବର୍ଗା ଯଦା ସ୍ୟୁର୍ଦୃଢ଼ଭକ୍ତୟଃ
ଶତ୍ରୂଣାଂ ବିପରୀତାଶ୍ଚ କର୍ତ୍ତବ୍ୟୋ ବିଗ୍ରହସ୍ତଦା । ୭୮ ।

ଯେତେବେଳେ ମିତ୍ର, ଅମାତ୍ୟ ଓ ସୁହୃଦ୍‌ବର୍ଗ ରାଜାଙ୍କ ପ୍ରତି ଦୃଢ଼ଭାବରେ ଅନୁରକ୍ତ ଥିବେ ଓ ଶତ୍ରୁ ରାଜାଙ୍କର ଲୋକେ ତାଙ୍କ ପ୍ରତି ବିରକ୍ତ ଥିବେ, ସେହି ସମୟରେ ଯୁଦ୍ଧ କରିବା ଉଚିତ । ୭୮ । ପୁଣି—

ଭୂମିର୍ମିତ୍ରଂ ହିରଣ୍ୟଂ ଚ ବିଗ୍ରହସ୍ୟ ଫଳଂ ତ୍ରୟମ୍
ଯଦୈ୍ୟତନ୍ନିଶ୍ଚିତଂ ଭାବି କର୍ତ୍ତବ୍ୟୋ ବିଗ୍ରହସ୍ତଦା । ୬୮ ।

ଭୂମିଲାଭ, ମିତ୍ରଲାଭ, ସ୍ୱର୍ଣ୍ଣଲାଭ—ଏ ତିନୋଟି ସଂଗ୍ରାମର ଫଳ ହୋଇଥାଏ । ଯେତେବେଳେ ଏ ତିନୋଟିର ପ୍ରାପ୍ତି ନିଶ୍ଚିତ ମନେ ହେବ, ସେତେବେଳେ ଯୁଦ୍ଧ କରିବା କର୍ତ୍ତବ୍ୟ ।" ୬୮ ।

ରାଜା କହିଲେ, "ହେ ମନ୍ତ୍ରୀ, ପ୍ରଥମେ ମୋର ସୈନ୍ୟବଳକୁ ଦେଖ । ଏମାନଙ୍କର ଉପଯୋଗକୁ ବିଚାର କର । ପୁଣି ଜଣେ ଜ୍ୟୋତିଷୀଙ୍କୁ ଡକାଅ । ସେ ଯୁଦ୍ଧଯାତ୍ରା କରିବା ପାଇଁ ଗୋଟିଏ ଶୁଭଲଗ୍ନ ସ୍ଥିର କରି ଦିଅନ୍ତୁ ।" ମନ୍ତ୍ରୀ କହିଲେ, "ମହାରାଜ, ତଥାପି ହଠାତ୍ ଯୁଦ୍ଧଯାତ୍ରା କରିବା ଅନୁଚିତ । କାରଣ—

ବିଶନ୍ତି ସହସା ମୂଢ଼ା ଯେଽବିଚାର୍ଯ୍ୟ ଦ୍ୱିଷଦ୍‌ବଳମ୍ ।
ଖଡ୍‌ଗଧାରାପରିଷ୍ୱଙ୍ଗ ଲଭନ୍ତେ ତେ ସୁନିଶ୍ଚିତମ୍ । ୬୯ ।

ଯେଉଁ ମୂର୍ଖ ଶତ୍ରୁର ସେନା ଓ ବଳ ବିଚାର ନ କରି ସହସା ଯୁଦ୍ଧରେ ପ୍ରବେଶ କରେ, ସେ ନିଶ୍ଚୟ ତରବାରିଧାରକୁ ଆଲିଙ୍ଗନ କରେ, (ଅର୍ଥାତ୍ ପ୍ରାଣ ହରାଏ) ।" ୬୮ ।

ରାଜା କହିଲେ, "ହେଁ ମନ୍ତ୍ରୀ, ମୋର ଏ ଉତ୍ସାହକୁ ନଷ୍ଟ କର ନାହିଁ । ବିଜୟକାମୀ ରାଜା ଯେପରି ଶତ୍ରୁ ଦେଶ ଆକ୍ରମଣ କରେ ସେପରି କଥା କୁହ ।" ଗୃଧ୍ର କହିଲା, "ଦେବ, ତେବେ କହୁଛି । କିନ୍ତୁ ଏହି କଥା ଅନୁସାରେ କାର୍ଯ୍ୟ କଲେ ଫଳଲାଭ ହେବ । କଥିତ ଅଛି—

କିଂ ମନ୍ତ୍ରେଣାଽନନୁଷ୍ଠାନେନ ଶାସ୍ତ୍ରବିତ୍ପୃଥିବୀପତେଃ ।
ନ ହ୍ୟୌଷଧପରିଜ୍ଞାନାଦ୍‌ବ୍ୟାଧେଃ ଶାନ୍ତିଃ କ୍ୱଚିଦ୍‌ଭବେତ୍ । ୭୦ ।

ଶାସ୍ତ୍ରଜ୍ଞ ହୋଇ ମଧ୍ଯ ଯଦି ରାଜା ମନ୍ତ୍ରଣା ଅନୁସାରେ କାର୍ଯ୍ୟ ଅନୁଷ୍ଠାନ ନ କରନ୍ତି ତେବେ ଲାଭ କଅଣ ? କେବଳ ଭଲ ଔଷଧ ଜାଣିବା ଦ୍ୱାରା କେବେ ରୋଗ ଭଲ ହୋଇଯାଏ କି ? ୭୦ ।

ରାଜାଙ୍କର ଆଦେଶ ଅଲଙ୍ଘନୀୟ । ତେଣୁ ମୁଁ ଯାହା ଶୁଣିଛି ତାହା କହୁଅଛି । ଶୁଣନ୍ତୁ, ମହାରାଜ !

ନଦ୍ୟଦ୍ରି ବନଦୁର୍ଗେଷୁ ଯତ୍ର ଯତ୍ର ଭୟଂ ନୃପ !
ତତ୍ର ତତ୍ର ଚ ସେନାନୀର୍ଯାୟାଦ୍‌ବ୍ୟୂହୀକୃତୈର୍ବଲୈଃ । ୭୧ ।

ହେ ରାଜନ୍ ! ନଦୀ, ପର୍ବତ, ବନ, ଦୁର୍ଗ ଆଦି ସ୍ଥାନ, ଯେଉଁ ଯେଉଁ ସ୍ଥାନରେ ଭୟର କାରଣ ଥାଏ, ସେହି ସେହି ସ୍ଥାନମାନଙ୍କୁ ବ୍ୟୂହ ଆକାରରେ ସୁସଜ୍ଜିତ ସୈନ୍ୟ ନେଇ ସେନାପତି ଯିବା ଉଚିତ । ୭୧ ।

ବଳାଧ୍ୟକ୍ଷଃ ପୁରୋ ଯାୟାତ୍ ପ୍ରବୀରପୁରୁଷାନ୍ୱିତଃ
ମଧ୍ୟେ କଳତ୍ରଂ, ସ୍ୱାମୀ ଚ, କୋଶଃ, ଫଲ୍‌ଗୁ ଚ ଯଦ୍‌ବଳମ୍ । ୭୨ ।

ବଡ଼ ବଡ଼ ବୀର ପୁରୁଷ ସହିତ ପ୍ରଧାନ ସେନାପତି ସୈନ୍ୟମାନଙ୍କ ଆଗରେ ଯିବେ ଓ ମଧ୍ୟଭାଗରେ ସ୍ତ୍ରୀମାନେ, ରାଜା, ରାଜକୋଷ ଓ ଅଳ୍ପବଳଶାଳୀ ସୈନ୍ୟ ରହିବେ । ୭୨ ।

ପାର୍ଶ୍ୱୟୋରୁଭୟୋରଶ୍ୱା ଅଶ୍ୱାନାଂ ପାର୍ଶ୍ୱତୋ ରଥାଃ
ରଥାନାଂ ପାର୍ଶ୍ୱତୋ ନାଗା ନାଗାନାଂ ଚ ପଦାତୟଃ । ୭୩ ।

ସେନାଧ୍ୟକ୍ଷଙ୍କ ଉଭୟ ପାର୍ଶ୍ୱରେ ଅଶ୍ୱ, ଅଶ୍ୱଙ୍କ ପାର୍ଶ୍ୱରେ ରଥ, ରଥର ପାର୍ଶ୍ୱରେ ହସ୍ତୀ ଓ ହସ୍ତୀଙ୍କ ପାର୍ଶ୍ୱରେ ପଦାତିମାନେ ରହିବେ । ୭୩ ।

ପଶ୍ଚାତ୍ ସେନାପତିର୍ଯାୟାତ୍ ଖିନ୍ନାନାଶ୍ୱାସୟଞ୍ଛନୈଃ
ମନ୍ତ୍ରିଭିଃ ସୁଭଟୈର୍ଯୁକ୍ତଃ ପ୍ରତିଗୃହ୍ୟ ବଳଂ ନୃପଃ । ୭୪ ।

ଏହାଙ୍କ ପଛରେ କ୍ଳାନ୍ତ ହୋଇଥିବା ଲୋକମାନଙ୍କୁ ଆଶ୍ୱାସନା ଦେଇ ଦେଇ ସେନାପତି ଗ୍ଭଲିବେ । ତାଙ୍କ ପଛରେ ମନ୍ତ୍ରୀମାନଙ୍କୁ ଓ ପ୍ରସିଦ୍ଧ ବୀରମାନଙ୍କୁ ଘେନି ରାଜା ଯିବେ । ୭୪ ।

ସମେୟାଦ୍ ବିଷମଂ ନାଗୈ ର୍ଜଲାଢ୍ୟଂ ସମହୀଧରମ୍ ।
ସମମଶ୍ୱୈର୍ଜଳଂ ନୌଭିଃ ସର୍ବତ୍ରୈବ ପଦାତିଭିଃ । ୭୫ ।

ଉଚ୍ଚନୀଚ, ଜଳପୂର୍ଣ୍ଣ ତଥା ପାର୍ବତୀୟ ଭୂମିକୁ ହାତୀଦ୍ୱାରା, ସମତଳ ସ୍ଥାନକୁ ଅଶ୍ୱଦ୍ୱାରା, ଜଳକୁ ନୌକାଦ୍ୱାରା ଓ ଯେ କୌଣସି ସ୍ଥାନକୁ ପଦାତିକ ସୈନ୍ୟମାନଙ୍କୁ ଘେନି ଯାତ୍ରା କରିବା ଆବଶ୍ୟକ । ୭୫ ।

ହସ୍ତିନାଂ ଗମନଂ ପ୍ରୋକ୍ତଂ ପ୍ରଶସ୍ତଂ ଜଳଦାଽଗମେ ।
ତଦନ୍ୟତ୍ର ତୁରଙ୍ଗାଣାଂ ପତ୍ତୀନାଂ ସର୍ବଦୈବ ହି । ୭୬ ।

ହାତୀମାନଙ୍କ ଦ୍ୱାରା ଯାତ୍ରା କରିବାପାଇଁ ବର୍ଷା କାଳର ଆରମ୍ଭ ଉତ୍ତମ ସମୟ ଅଟେ । ଅନ୍ୟ ସମୟରେ ଅଶ୍ୱପୃଷ୍ଠରେ ଯିବା ଉତ୍ତମ । ପଦାତି ପକ୍ଷରେ ଯେ କୌଣସି ସମୟରେ ଯାତ୍ରା କରାଯାଇ-ପାରେ । ୭୬ ।

ଶୈଳେଷୁ ଦୁର୍ଗମାର୍ଗେଷୁ ବିଧେୟଂ ନୃପରକ୍ଷଣମ୍
ସ୍ୱଯୋଧୈଃ ରକ୍ଷିତସ୍ୟାଽପି ଶୟନଂ ଯୋଗନିଦ୍ରୟା । ୭୭ ।

ପାହାଡ଼ରେ ବା ଅଗମ୍ୟ ପଥରେ ରାଜାଙ୍କୁ ରଖିବ । ଚତୁର୍ଦ୍ଦିଗରେ ନିଜର ସୈନ୍ୟମାନଙ୍କ ଦ୍ୱାରା ସୁରକ୍ଷିତ ହୋଇଥିଲେହେଁ ରାଜା ଯୋଗ ନିଦ୍ରାରେ ଶୟନ କରିବେ, ଅର୍ଥାତ୍ ସତର୍କ ଭାବରେ ଶୋଇବେ । ୭୭ ।

ନାଶୟେଦ୍ କର୍ଷୟେଚ୍ଛତ୍ରୂନ୍ ଦୁର୍ଗ-କଣ୍ଟକ-ମର୍ଦ୍ଦନୈଃ
ପରଦେଶପ୍ରବେଶେ ଚ କୁର୍ଯ୍ୟାଦାଟବିକାନ୍ ପୁରଃ । ୭୭ ।

ଦୁର୍ଗର ବାଧା ଦୂର କରିବା ଦ୍ୱାରା ଶତ୍ରୁକୁ ବିନାଶ କରିବ ବା ଯନ୍ତ୍ରଣା ଦେବ । ଶତ୍ରୁରାଜ୍ୟରେ ପ୍ରବେଶ କଲାବେଳେ ବନ୍ୟ ଜାତିର (କନ୍ଧ ଶବର ଆଦି) ଲୋକଙ୍କୁ ଆଗେ ଆଗେ (ପଥ ଦେଖାଇବା ନିମନ୍ତେ) ଯିବାପାଇଁ ନିଯୁକ୍ତ କରିବ । ୭୮ ।

ଯତ୍ର ରାଜା ତତ୍ର କୋଶୋ ବିନା କୋଶଂ ନ ରାଜତା ।
ସୁଭଟେଭ୍ୟସ୍ତତୋ ଦଦ୍ୟାତ୍ କୋହି ଦାତୁର୍ନ ଯୁଧ୍ୟତେ । ୭୯ ।

ଯେଉଁଠାରେ ରାଜା ରହିବେ ରାଜକୋଷ ମଧ୍ୟ ସେହିଠାରେ ରହିବ । ରାଜକୋଷ ବିନା ରାଜାଙ୍କର ରାଜପଣ କାହିଁ ? ଉତ୍ତମ ସୈନିକମାନଙ୍କୁ ସେଥିରୁ ଅର୍ଥ ଦେବାକୁ ହେବ । କାରଣ ଦାନଶୀଳ ରାଜାଙ୍କ ପାଇଁ କିଏ ଯୁଦ୍ଧ କରେ ନାହିଁ ? ୭୯ ।

ନ ନରସ୍ୟ ନରୋ ଦାସୋ ଦାସସ୍ତ୍ୱର୍ଥସ୍ୟ ଭୂପତେ ।
ଗୌରବଂ ଲାଘବଂ ବାଽପି ଧନାଽଧନନିବନ୍ଧନମ୍ । ୮୦ ।

ହେ ରାଜନ୍, ମନୁଷ୍ୟ ମନୁଷ୍ୟର ଦାସ ହୁଏ ନାହିଁ; କିନ୍ତୁ ଧନର ଦାସ ହୁଏ । ଏହି ଧନ ବା ଧନର ଅଭାବ ହେତୁରୁ ମନୁଷ୍ୟ ମହତ୍ତ୍ୱ ବା ଲଘୁତ୍ୱ ଲାଭ କରିଥାଏ । ୮୦ ।

ଅଭେଦେନ ଚ ଯୁଧ୍ୟେତ
ରକ୍ଷେଚ୍ଚୈବ ପରସ୍ପରମ୍ ।
ଫଲ୍‌ଗୁ ସୈନ୍ୟଂ ଚ ଯତ୍କିଞ୍ଚି-
ନ୍ମଧ୍ୟେ ବ୍ୟୂହସ୍ୟ କାରୟେତ୍ । ୮୧ ।

ସୈନିକମାନେ ପରସ୍ପର ଭେଦଭାବ ନ ରଖି ଏକତ୍ର ଯୁଦ୍ଧ କରିବେ ଓ ପରସ୍ପରକୁ ରକ୍ଷା କରିବେ; ଯେଉଁ କେତେ ଜଣ କ୍ଳାନ୍ତ ବା ଦୁର୍ବଳ ସୈନ୍ୟ ଥିବେ ସେମାନଙ୍କୁ ବ୍ୟୂହର ମଧ୍ୟରେ ରଖିବେ । । ୮୧ ।

ପଦାତୀଂଶ୍ଚ ମହୀପାଲଃ ପୁରୋଽନୀକସ୍ୟ ଯୋଜୟେତ୍ ।
ଉପରୁଧ୍ୟାରିମାସୀତ ରାଷ୍ଟ୍ରଂ ଚାସ୍ୟୋପପୀଡ଼ୟେତ୍ । ୮୨ ।

ରାଜାଙ୍କର କର୍ତ୍ତବ୍ୟ ହେଉଛି ପଦାତିକ ସେନାମାନଙ୍କୁ ସେନା-ଦଳର ପୁରୋଭାଗରେ ନିଯୁକ୍ତ କରିବେ । ଶତ୍ରୁକୁ ଚାରିଆଡ଼ୁ ଅବରୁଦ୍ଧ କରି ତାର ରାଜ୍ୟକୁ (ଲୁଟିକରି ଶସ୍ୟାଦି ନଷ୍ଟକରି) ଉତ୍ପୀଡ଼ନ କରିବେ । ୮୨ ।

ସ୍ୟନ୍ଦନାଶ୍ୱୈଃ ସମେ ଯୁଧ୍ୟେଦନୂପେ ନୌଦ୍ୱିପୈସ୍ତଥା ।
ବୃକ୍ଷଗୁଳ୍ମାବୃତେ ଚାପୈରସିଚର୍ମାୟୁଧୈଃ ସ୍ଥଳେ । ୮୩ ।

ସମତଳ ଭୂମିରେ ରଥ ଓ ଅଶ୍ୱଦ୍ୱାରା, ଜଳମଗ୍ନ ସ୍ଥାନରେ ନୌକା ଓ ହସ୍ତୀଦ୍ୱାରା, ବୃକ୍ଷ ଓ ଗୁଳ୍ମଦ୍ୱାରା ଆଚ୍ଛାଦିତ ସ୍ଥାନରେ ଧନୁ, ଖଡ଼୍ଗ ଓ ଢାଲ ଦ୍ୱାରା ଯୁଦ୍ଧ କରିବାକୁ ହେବ । ୮୩ ।

ଦୂଷୟେଚ୍ଚାସ୍ୟ ସତତଂ ଯବସାନ୍ନୋଦକେନ୍ଧନମ୍
ଭିନ୍ଦ୍ୟାଚ୍ଚୈବ ତଡ଼ାଗାନି ପ୍ରାକାରାନ୍ ପରିଖାସ୍ତଥା । ୮୪ ।

ଶତ୍ରୁର ତୃଣ, ଖାଦ୍ୟଦ୍ରବ୍ୟ, ଜଳ ଓ କାଷ୍ଠାଦିକୁ ଦୂଷିତ କରି ଦେବା ଆବଶ୍ୟକ । ପୁଷ୍କରିଣୀ, ଦୁର୍ଗର ପ୍ରାଚୀର ଓ ପରିଖାକୁ ନଷ୍ଟ କରିଦେବ । ୮୪ ।

ବଳେଷୁ ପ୍ରମୁଖୋ ହସ୍ତୀ ନ ତଥାଽନ୍ୟୋ ମହୀପତେଃ ।
ନିଜୈରବୟବୈରେବ ମାତଙ୍ଗୋଽଷ୍ଟାୟୁଧଃ ସ୍ମୃତଃ । ୮୫ ।

ରାଜାଙ୍କର ସେନା ମଧ୍ୟରେ ହାତୀ ହେଉଛନ୍ତି ଶ୍ରେଷ୍ଠ । ଅନ୍ୟ କେହ୍ୱି ହାତୀ ପରି ନୁହେଁ । ହାତୀର ଆଠଟି ଅଙ୍ଗ (ଚାରି ପାଦ, ଦୁଇ ଦନ୍ତ, ଏକ ଶୁଣ୍ଢ ଓ ଏକ ଲାଙ୍ଗୁଳ) ଆଠଟି ଅସ୍ତ୍ର ପରି ହୋଇଥିବାରୁ ଏହା ଅଷ୍ଟାୟୁଧ ନାମରେ ଖ୍ୟାତ । ୮୫ ।

ବଳମଶ୍ୱଶ୍ଚ ସୈନ୍ୟାନାଂ ପ୍ରାକାରୋ ଜଙ୍ଗମୋ ଯତଃ ।
ତସ୍ମାଦଶ୍ୱାଧିକୋ ରାଜା ବିଜୟୀ ସ୍ଥଳବିଗ୍ରହେ । ୮୬ ।

ସେନାର ମୁଖ୍ୟ ବଳ ହେଉଛି ଅଶ୍ୱ; କାରଣ ଏହା ହେଉଛି ଚଳମାନ ପ୍ରାଚୀର ସଦୃଶ । ତେଣୁ ସ୍ଥଳ ଯୁଦ୍ଧରେ ଯେଉଁ ରାଜାଙ୍କର ଅଧିକ ଅଶ୍ୱ ଥାଆନ୍ତି, ସେ ବିଜୟୀ ହୁଅନ୍ତି । ୮୬ ।

ପୁଣି କଥିତ ଅଛି—

ଯୁଧ୍ୟମାନା ହୟାରୂଢ଼ା ଦେବାନାମପି ଦୁର୍ଜୟାଃ ।
ଅପିଦୂରସ୍ଥିତାସ୍ତେଷାଂ ବୈରିଣୋ ହସ୍ତବର୍ତ୍ତିନଃ । ୮୭ ।

ଅଶ୍ୱାରୋହଣ କରି ଯୁଦ୍ଧ କରୁଥିବା ସୈନ୍ୟମାନେ ଦେବତାମାନଙ୍କର ସୁଦ୍ଧା ଦୁର୍ଜୟ । ଶତ୍ରୁ ଦୂରରେ ଥିଲେ ସୁଦ୍ଧା ଅଶ୍ୱାରୋହୀ ସୈନ୍ୟମାନଙ୍କର କରଗତ ବୋଲି ମନେ କରିବାକୁ ହେବ । ୮୭ ।

ପ୍ରଥମଂ ଯୁଦ୍ଧକାରିତ୍ୱଂ ସମସ୍ତବଳପାଳନମ୍ ।
ଦିଙ୍ମାର୍ଗାଣାଂ ବିଶୋଧିତ୍ୱଂ ପତ୍ତିକର୍ମ ପ୍ରଚକ୍ଷତେ । ୮୮ ।

ସମସ୍ତ ସୈନ୍ୟଙ୍କର ଆଗରେ ରହି ଯୁଦ୍ଧ କରିବା, ସମସ୍ତ ସୈନ୍ୟଙ୍କୁ ରକ୍ଷାକରିବା, ସମସ୍ତ ଦିଗର ପଥକୁ ପରିଷ୍କୃତ ରଖିବା— ଏଗୁଡ଼ିକ ହେଉଛି ପଦାତିକ ସୈନ୍ୟମାନଙ୍କର କାର୍ଯ୍ୟ । ୮୮ ।

ସ୍ୱଭାବଶୂରମସ୍ତ୍ରଜ୍ଞମବିରକ୍ତଂ ଜିତଶ୍ରମମ୍
ପ୍ରସିଦ୍ଧକ୍ଷତ୍ରସଂପ୍ରାୟଂ ବଳଂ ଶ୍ରେଷ୍ଠତମଂ ବିଦୁଃ । ୮୯ ।

ସ୍ୱଭାବତଃ ବୀର, ଅସ୍ତ୍ରଚାଳନାରେ ନିପୁଣ, ରାଜାଙ୍କ ପ୍ରତି ଅନୁରକ୍ତ, ଶ୍ରମଶୀଳ, ପ୍ରସିଦ୍ଧ କ୍ଷତ୍ରିୟମାନଙ୍କ ଦ୍ୱାରା ଗଠିତ ସେନାଦଳ ଶ୍ରେଷ୍ଠ ବୋଲି ପରିଚିତ । ୮୯ ।

ଯଥା ପ୍ରଭୁକୃତାନ୍ମାନାଦ୍ ଯୁଧ୍ୟନ୍ତେ ଭୁବି ମାନବାଃ
ନ ତଥା ବହୁଭିର୍ଦତ୍ତୈର୍ଦ୍ରବିଣୈରପି ଭୂପତେ । ୯୦ ।

ହେ ରାଜନ୍ ! ଏ ପୃଥିବୀରେ ରାଜଦତ୍ତ ସମ୍ମାନ ଲାଭ ହେତୁରୁ ଲୋକେ ଯେପରି ଯୁଦ୍ଧ କରନ୍ତି, ବହୁ ପ୍ରକାରେ ପ୍ରଚୁର ଧନ ଦାନ କଲେ ମଧ୍ୟ ସେପରି ଯୁଦ୍ଧ କରନ୍ତି ନାହିଁ । ୯୦ ।

ବରମଳ୍ପବଳଂ ସାରଂ ନ କୁର୍ଯ୍ୟାନ୍ମୁଣ୍ଡମଣ୍ଡଳୀମ୍ ।
କୁର୍ଯ୍ୟାଦସାରଭଙ୍ଗୋ ହି ସାରଭଙ୍ଗମପି ସ୍ଫୁଟମ୍ । ୯୧ ।

ବଳବାନ୍ କ୍ଷୁଦ୍ରସେନା ବରଂ ଭଲ; କେବଳ ମୁଣ୍ଡ ଗଣାଇବା ପାଇଁ ଅଯଥା ବହୁସଂଖ୍ୟକ ସୈନିକଙ୍କୁ ନେଇ ସେନା ଗଠନ କରିବା ଉଚିତ ନୁହେଁ । କାରଣ ଦୁର୍ବଳ ସେନା ପରାସ୍ତ ହେବା ପରେ ବଳବାନ୍ ସେନା ମଧ୍ୟ ଇତସ୍ତତଃ ହୋଇଯାନ୍ତି, ଏହା ସୁସ୍ପଷ୍ଟ । ୯୧ ।

ଅପ୍ରସାଦୋଽନଧିଷ୍ଠାନଂ ଦେୟାଂଶହରଣଂ ଚ ଯତ୍ ।
କାଳଯାପୋଽପ୍ରତୀକାରସ୍ତଦ୍‌ବୈରାଗ୍ୟସ୍ୟ କାରଣମ୍ । ୯୨ ।

ସୈନ୍ୟମାନଙ୍କ ପ୍ରତି ରାଜାଙ୍କର ଅନନୁଗ୍ରହ (ପାରିତୋଷିକ ବା ସମ୍ମାନ ଦାନର ଅଭାବ), ଯୋଗ୍ୟ ସେନାଧ୍ୟକ୍ଷଙ୍କର ଅଭାବ, ଦେୟ

ବେତନାଦିରେ ସଂକୋଚ, ବେତନାଦି ଦେବାରେ ବିଳମ୍ବ, ସୈନ୍ୟମାନଙ୍କର ଅଭାବ ଅସୁବିଧା ଦୂର କରିବାରେ ଚେଷ୍ଟାର ଅଭାବ—ଏଗୁଡ଼ିକ ହେଉଛି ସୈନ୍ୟମାନଙ୍କର ବିରାଗର କାରଣ । ୯୨ ।

ଅପୀଡ଼ୟନ୍ ବଳଂ ଶତ୍ରୂନ୍ ଜିଗୀଷୁରଭିଷେଣୟେତ୍ ।
ସୁଖସାଧ୍ୟଂ ଦ୍ୱିଷାଂ ସୈନ୍ୟଂ ଦୀର୍ଘଯାନପ୍ରପୀଡ଼ିତମ୍ । ୯୩ ।

ବିଜୟକାମୀ ରାଜା ସେନାଙ୍କୁ ପୀଡ଼ା ନ ଦେଇ (ଅଳ୍ପ ଅଳ୍ପ ଦୂର ଯାଇ) ଶତ୍ରୁଙ୍କୁ ଆକ୍ରମଣ କରିବା ଉଚିତ । ତାହା ହେଲେ ଦୀର୍ଘ ପଥ ଅତିକ୍ରମ କରି କ୍ଳାନ୍ତ ହୋଇଥିବା ଶତ୍ରୁ ସୈନ୍ୟଙ୍କୁ ଅନାୟାସରେ ପରାଜୟ କରାଯାଇ ପାରିବ ।

ଦାୟାଦାଦପରୋ ଯସ୍ମାନ୍ନାସ୍ତି ଭେଦକରୋ ଦ୍ୱିଷାମ୍ ।
ତସ୍ମାଦୁତ୍ଥାପୟେଦ୍ ଯତ୍ନାଦ୍ଦାୟାଦଂ ତସ୍ୟ ବିଦ୍ୱିଷଃ । ୯୪ ।

ଶତ୍ରୁର ସଗୋତ୍ରଭିନ୍ନ ଅନ୍ୟ ବିଭେଦକାରୀ କେହି ନ ଥାନ୍ତି । ତେଣୁ ଶତ୍ରୁର ସେହି ସଗୋତ୍ର (ଅଂଶୀଦାର) ମାନଙ୍କୁ ଅତି ଯତ୍ନରେ ଶତ୍ରୁ ବିରୁଦ୍ଧରେ ଠିଆ କରାଇବା ଉଚିତ । ୯୪ ।

ସନ୍ଧାୟ ଯୁବରାଜେନ ଯଦି ବା ମୁଖ୍ୟମନ୍ତ୍ରିଣା
ଅନ୍ତଃପ୍ରକୋପଣଂ କୁର୍ଯ୍ୟାଦଭିଯୋକ୍ତା ସ୍ଥିରାତ୍ମନଃ । ୯୫ ।

ଯୁବରାଜ ଅଥବା ମୁଖ୍ୟମନ୍ତ୍ରୀଙ୍କ ସହିତ ଗୁପ୍ତ ସନ୍ଧି କରି ଦୁର୍ଗବଳାଦିଆଶ୍ରୟରେ ସୁଦୃଢ଼ ରହିଥିବା ଯୁଦ୍ଧରତ ଶତ୍ରୁ ଗୃହରେ ବିଦ୍ରୋହ ସୃଷ୍ଟି କରି ଦେବାକୁ ହେବ । ୯୫ ।

କ୍ରୂରଂ ମିତ୍ରଂ ରଣେ ଚାପି ଭଙ୍ଗଂ ଦତ୍ତ୍ୱା ବିଘାତୟେତ୍ ।
ଅଥବା ଗୋଗ୍ରହାକୃଷ୍ଟ୍ୟା ତନ୍ମୁଖ୍ୟାଶ୍ରିତବନ୍ଧନାତ୍ । ୯୬ ।

ଦୁଷ୍ଟ ଶତ୍ରୁକୁ ଯୁଦ୍ଧରେ ପରାସ୍ତ କରି ତାକୁ ବଧ କରିବା ଉଚିତ। ଅଥବା ବାଛୁରିକୁ ଧରି ନେଲେ ଗାଈ ଯେପରି ଆପେ ଆସି ଧରାଦିଏ, ସେହିପରି ଶତ୍ରୁର ଦାରାପୁତ୍ରାଦି ଆଶ୍ରିତଙ୍କୁ ଧରି ଆଣି ବନ୍ଧନ କରିବାଦ୍ୱାରା ଶତ୍ରୁକୁ ବଶ କରି ମରାଇ ଦେବା ଉଚିତ। ୯୬।

ସ୍ୱରାଜ୍ୟଂ ବାସୟେଦ୍ରାଜା ପରଦେଶାପହରଣାତ୍
ଅଥବା ଦାନ-ମାନାଭ୍ୟାଂ ବାସିତଂ ଧନଦଂ ହି ତତ୍। ୯୭।

ଶତ୍ରୁ ରାଜ୍ୟକୁ ଧ୍ୱଂସ କରି ସେଠାର ଅଧିବାସୀମାନଙ୍କୁ ନିଜ ରାଜ୍ୟରେ ବାସ କରାଇବ, ଅଥବା ସେମାନଙ୍କୁ ଧନ ସମ୍ମାନର ଲୋଭ ଦେଖାଇ ନିଜ ଦେଶକୁ ନେଇ ଆସିବ। କାରଣ ଏପରି ବାସ କରିବାକୁ ଆସିଥିବା ଲୋକଙ୍କଠାରୁ ଧନ ମିଳିଥାଏ। ୯୭।

ଆଉ ଅଧିକ କଥା କହିବାରେ କି ଲାଭ ?

ଆତ୍ମୋଦୟଃ ପରଗ୍ଲାନିର୍ଦ୍ୱୟଂ ନୀତିରିତୀୟତୀ।
ତଦୂରୀକୃତ୍ୟ କୃତିଭିର୍ବାଚସ୍ପତ୍ୟଂ ପ୍ରତାୟତେ। ୯୮।

ନିଜର ଉନ୍ନତି ଓ ଶତ୍ରୁର ଅବନତି, ଏ ଦୁଇଟି ହେଉଛି ପ୍ରଧାନ ନୀତି। ଏହି ନୀତିକୁ ଗ୍ରହଣ କରି କୃତୀ ପୁରୁଷମାନେ ନିଜର ପାଣ୍ଡିତ୍ୟ ପ୍ରକାଶ କରିଥାନ୍ତି।" ୯୮।

ରାଜା ହସି ହସି କହିଲେ, "ଏସବୁ ବଡ଼ ଠିକ୍। କିନ୍ତୁ—

ଅନ୍ୟଦୁଚ୍ଛୃଙ୍ଖଳଂ ସତ୍ତ୍ୱମନ୍ୟଚ୍ଛାସ୍ତ୍ରନିୟନ୍ତ୍ରିତମ୍
ସାମାନାଧିକରଣ୍ୟଂ ହି ତେଜସ୍ତିମିରୟୋଃ କୁତଃ। ୯୯।

ଉଚ୍ଛୃଙ୍ଖଳ ପରାକ୍ରମ ଏକ କଥା, ଶାସ୍ତ୍ରଦ୍ୱାରା ନିୟନ୍ତ୍ରିତ ବଳ ଅନ୍ୟ ଏକ କଥା । ଆଲୋକ ଓ ଅନ୍ଧକାରର ଏକତ୍ର ଅବସ୍ଥାନ କାହୁଁ ସମ୍ଭବ ହେବ ?" ୯୯ ।

ଏହାପରେ ରାଜା ଜ୍ୟୋତିଷୀଙ୍କ ଦ୍ୱାରା ନିର୍ଦ୍ଧାରିତ ଲଗ୍ନରେ ପ୍ରସ୍ଥାନ କଲେ ।

ଅନନ୍ତର ପ୍ରେରିତ ପ୍ରଧାନ ଗୁପ୍ତଚର ହିରଣ୍ୟଗର୍ଭଙ୍କ ନିକଟକୁ ଆସି ପ୍ରଣାମ କରି କହିଲା, "ପ୍ରଭୁ, ରାଜା ଚିତ୍ରବର୍ଣ୍ଣ ଆସି ପ୍ରାୟ ପହଞ୍ଚିଗଲେଣି । ବର୍ତ୍ତମାନ ସେ ମଳୟ ପର୍ବତର ଅଧିତ୍ୟକାରେ ସୈନ୍ୟ ଛାଉଣି ପକାଇ ରହିଅଛନ୍ତି । ଆମର ପ୍ରତି ମୁହୂର୍ତ୍ତରେ ଦୁର୍ଗ ଅନ୍ୱେଷଣ କରିବା ଉଚିତ; କାରଣ ତାଙ୍କର ମହାମନ୍ତ୍ରୀ ହେଉଛି ଗୃଧ୍ର । କାହାରି ସହିତ ସେ ବିଶ୍ୱାସ କଥାବାର୍ତ୍ତା ହେଉଥିଲାବେଳେ ମୁଁ ସୂଚନା ପାଇଲି—ସେ ଆମ ଦୁର୍ଗଭିତରେ ଆଗରୁ ଜଣେ କାହାରିକୁ ନିଯୁକ୍ତ କରି ରଖିଛି ।" ଚକ୍ରବାକ କହିଲା, "ମହାରାଜ, ସେ ଏହି କାକ ହୋଇଥିବ ।"

ରାଜା କହିଲେ, "ତାହା କଦାପି ହୋଇ ନପାରେ । ଯଦି ସେପରି ହୋଇଥାନ୍ତା, ତେବେ ସେ କାହିଁକି ଶୁକର ଇଚ୍ଛା ଅନୁ-ସାରେ କାର୍ଯ୍ୟ କରିଥାନ୍ତା ? ପୁଣି ଶୁକ ଆସି ପହଞ୍ଚିବାବେଳୁ ତାର ଯୁଦ୍ଧରେ ଉତ୍ସାହ ଦେଖା ଯାଇଛି । ସେ ବହୁକାଳରୁ ଏଠାରେ ରହିଛି ।" ମନ୍ତ୍ରୀ ଚକ୍ରବାକ କହିଲା, "ତଥାପି ସେ ହେଉଛି ଆଗନ୍ତୁକ, ତେଣୁ ଆଶଙ୍କାର ପାତ୍ର ।" ରାଜା କହିଲେ, "ବେଳେ-ବେଳେ ଆଗନ୍ତୁକମାନଙ୍କ ଦ୍ୱାରା ମହାନ୍ ଉପକାର ସାଧିତ ହୋଇ-ଥିବାର ଦେଖାଯାଏ । ଶୁଣ—

ପରୋଽପି ହିତବାନ୍ ବନ୍ଧୁର୍ବନ୍ଧୁରପ୍ୟହିତଃ ପରଃ ।
ଅହିତୋ ଦେହଜୋ ବ୍ୟାଧିର୍ହିତମାରଣ୍ୟମୌଷଧମ୍ । ୧୦୦ ।

ଶତ୍ରୁ ହେଲେହେଁ ସେ ଯଦି ହିତକାରୀ ହୁଏ, ତେବେ ସେ ବନ୍ଧୁ; ବନ୍ଧୁ ହୋଇଥିଲେହେଁ ସେ ଯଦି ଅହିତ କରେ, ତେବେ ସେ ହୁଏ ଶତ୍ରୁ । ବ୍ୟାଧି ଦେହରୁ ଜାତ ହୋଇ ମଧ୍ୟ ଦେହର ଅମଙ୍ଗଳ କରେ; କିନ୍ତୁ ବନରେ ଜନ୍ମିଥିବା ଔଷଧ ଶରୀରର ମଙ୍ଗଳ ସାଧନ କରେ । ୧୦୦ । ଆହୁରି—

ଆସୀଦ୍ ବୀରବରୋ ନାମ ଶୂଦ୍ରକସ୍ୟ ମହୀଭୃତଃ ।
ସେବକଃ ସ୍ୱଳ୍ପକାଳେନ ସ ଦଦୌ ସୁତମାତ୍ମନଃ । ୧୦୧ ।

ରାଜା ଶୂଦ୍ରକଙ୍କର ବୀରବର ନାମରେ ଜଣେ ଭୃତ୍ୟ ଥିଲା । ସେ ଅଳ୍ପକାଳ ମଧ୍ୟରେ ରାଜାଙ୍କ ମଙ୍ଗଳ ପାଇଁ ନିଜର ପୁତ୍ରକୁ ମଧ୍ୟ ଦେଇ ପକାଇଥିଲା ।" ୧୦୧ ।

ଚକ୍ରବାକ ପଚାରିଲା—ସେ କଥା କିପରି ? ରାଜା କହିଲେ—

## କଥା-୮

ବହୁକାଳ ପୂର୍ବେ ମୁଁ ରାଜା ଶୂଦ୍ରକଙ୍କର କେଳି ସରୋବରରେ କର୍ପୂରକେଳି ନାମକ ରାଜହଂସଙ୍କର କନ୍ୟା କର୍ପୂରମଞ୍ଜରୀଙ୍କୁ ପ୍ରେମ କରୁଥିଲି । ଏକଦା ଜଣେ ରାଜପୁତ୍ର କେଉଁଠାରୁ ଆସି ରାଜଦ୍ୱାରରେ ଉପସ୍ଥିତ ହୋଇ ଦ୍ୱାରପାଳକୁ କହିଲେ, "ମୁଁ ଜଣେ ରାଜପୁତ୍ର, ଜୀବିକା ଅର୍ଜନ ନିମନ୍ତେ ଏଠାକୁ ଆସିଅଛି । ମୋତେ ରାଜାଙ୍କ ସହିତ ସାକ୍ଷାତ କରାଅ ।" ଦ୍ୱାରପାଳ ତାଙ୍କୁ ନେଇ ରାଜ-ଦର୍ଶନ କରାଇବାରୁ ସେ କହିଲେ; "ଯଦି ମହାରାଜାଙ୍କର ମୋତେ ଭୃତ୍ୟରୂପେ ରଖିବାର ପ୍ରୟୋଜନ ଥାଏ, ତେବେ ମୋର ବେତନ ସ୍ଥିର କରନ୍ତୁ ।"

ଶୂଦ୍ରକ କହିଲେ, "ତୁମର ବେତନ କେତେ ?" ବୀରବର କହିଲେ, "ମୋତେ ପ୍ରତିଦିନ ପାଞ୍ଚଶତ ସ୍ୱର୍ଣ୍ଣମୁଦ୍ରା ଦିଅନ୍ତୁ ।" ରାଜା କହିଲେ, "ତୁମର କି କି ଉପାଦାନ ଅଛି ?" ବୀରବର ଉତ୍ତର କଲେ, "ମୋର ଦୁଇ ବାହୁ ଓ ଖଡ଼୍ଗ ।" ରାଜା କହିଲେ, "ଏତେ ବେତନ ଦିଆଯାଇ ପାରିବନାହିଁ ।"

ତାହା ଶୁଣି ବୀରବର ରାଜାଙ୍କୁ ପ୍ରଣାମ କରି ବାହାରିଗଲେ । ତହୁଁ ମନ୍ତ୍ରୀମାନେ କହିଲେ, "ମହାରାଜ ! ଚାରିଦିନର ବେତନ ଦେଇ ଏହାଙ୍କର ପ୍ରକୃତ ରୂପ ବୁଝି, ସେ ଏତେ ବେତନର ଉପଯୁକ୍ତ କି ନା ଦେଖାଯାଉ ।" ତହୁଁ ମନ୍ତ୍ରୀମାନଙ୍କ କଥାରେ ରାଜା ବୀରବରଙ୍କୁ ଡକାଇଲେ ଏବଂ ତାମ୍ବୁଳ ଦେଇ ପଞ୍ଚଶତ ସ୍ୱର୍ଣ୍ଣମୁଦ୍ରା ଦେଲେ ।

ବୀରବର ଏହି ବେତନକୁ କିପରି ବ୍ୟୟ କରୁଥିଲେ, ରାଜା ତାହା ଗୋପନରେ ବୁଝିଲେ । ବେତନର ଅର୍ଦ୍ଧେକ ବୀରବର ଦେବତା ଓ ବ୍ରାହ୍ମଣଙ୍କୁ ଦାନ କରୁଥିଲେ; ଯାହା ରହୁଥିଲା ତହିଁର ଅର୍ଦ୍ଧେକ ଦୀନ ଦରିଦ୍ରମାନଙ୍କୁ ଦେଉଥିଲେ । ତତ୍ପରେ ଯାହା ବଳୁଥିଲା, ତାହାକୁ ସେ ନିଜର ଭୋଗ ବିଳାସରେ ବ୍ୟୟ କରୁଥିଲେ । ଏହି ସବୁ ନିତ୍ୟକର୍ମ ସାରି ସେ ଖଡ଼୍ଗ ଧରି ରାଜଦ୍ୱାରରେ ଦିବାରାତ୍ର ଜଗି ରହୁଥିଲେ । ରାଜା ନିଜେ ଆଦେଶ ଦେଲେ ସେ ଆପଣା ଘରକୁ ଯାଉଥିଲେ ।

ଏକଦା କୃଷ୍ଣ ଚତୁର୍ଦ୍ଦଶୀ ରାତ୍ରିରେ ରାଜା ଶୂଦ୍ରକ ଗୋଟିଏ କରୁଣ କ୍ରନ୍ଦନ ଧ୍ୱନି ଶୁଣିପାରିଲେ । ତାହା ଶୁଣି ରାଜା କହିଲେ— ଏଠାରେ ଦ୍ୱାର ଦେଶରେ କିଏ ଅଛି ? ତହୁଁ ବୀରବର ଉତ୍ତର କଲେ, "ମହାରାଜ, ମୁଁ ବୀରବର ଏଠାରେ ଅଛି ।" ରାଜା କହିଲେ,

"ଯାଅ, ରୋଦନ ଧ୍ୱନିର ଅନୁସରଣ କର ।" "ମହାରାଜଙ୍କର ଆଦେଶ ଶିରୋଧାର୍ଯ୍ୟ" ଏହା କହି ବୀରବର ଚାଲିଗଲେ ।

ରାଜା ମନେ ମନେ ଚିନ୍ତାକଲେ, "ମୁଁ ଏହି ରାଜପୁତ୍ରଙ୍କୁ ସୂଚୀଭେଦ୍ୟ ଅନ୍ଧକାରରେ ଏକାକୀ ପଠାଇଦେଲି । ଏପରି କରିବା ଉଚିତ ହେଲା ନାହିଁ । ତେଣୁ ମୁଁ ମଧ୍ୟ ନିଜେ ଯାଇ ଏହା କ'ଣ ନିରୂପଣ କରିବି ।"

ତତ୍ପରେ ରାଜା ନିଜର ଖଡ୍‌ଗ ଧରି ତାହାଙ୍କୁ ଅନୁସରଣ କରି ନଗରର ବାହାରକୁ ଗଲେ ।

ବୀରବର ଯାଇ ଜଣେ ରୂପଯୌବନସମ୍ପନ୍ନା, ସର୍ବାଲଙ୍କାର-ଭୂଷିତା ରମଣୀ ରୋଦନ କରୁଥିବାର ଦେଖିଲେ । ସେ ପଚାରିଲେ, "ତୁମେ କିଏ ? କାନ୍ଦୁଛ କାହିଁକି ?" ରମଣୀ ଉତ୍ତର କଲେ, "ମୁଁ ହେଉଛି ରାଜା ଶୂଦ୍ରକଙ୍କର ରାଜଲକ୍ଷ୍ମୀ । ବହୁଦିନରୁ ମୁଁ ତାଙ୍କର ବାହୁଚ୍ଛାୟାତଳେ ମହାସୁଖରେ ବିଶ୍ରାମ ନେଇ ରହିଥିଲି; ବର୍ତ୍ତମାନ ଅନ୍ୟତ୍ର ଯାଉଅଛି ।" ବୀରବର ପଚାରିଲେ, "ଯେଉଁଠାରେ ଅପାୟ (ବିପଦ) ଥାଏ, ସେଠାରେ ତାର ଉପାୟ ( ପ୍ରତୀକାରର ପନ୍ଥା ) ମଧ୍ୟ ଥାଏ । ତେବେ କିପରି ଆପଣ ପୁଣି ଏଠାରେ ରହିପାରିବେ ?" ରାଜଲକ୍ଷ୍ମୀ କହିଲେ, "ଯଦି ତୁମେ ନିଜର ବତିଶଲକ୍ଷଣଯୁକ୍ତ ପୁତ୍ର ଶକ୍ତିଧରକୁ ଭଗବତୀ ସର୍ବମଙ୍ଗଳାଙ୍କୁ ଉପହାର (ବଳି) ଦେବ, ତେବେ ମୁଁ ପୁଣି ଏହିଠାରେ ଦୀର୍ଘକାଳ ପର୍ଯ୍ୟନ୍ତ ରହିବି ।" ଏହା କହି ରାଜଲକ୍ଷ୍ମୀ ଅଦୃଶ୍ୟ ହୋଇଗଲେ ।

ଏହାପରେ ବୀରବର ଗୃହକୁ ଯାଇ ନିଜର ପତ୍ନୀ ଓ ପୁତ୍ରକୁ ଶୟନରୁ ଉଠାଇଲେ । ସେ ଦୁହେଁ ନିଦ୍ରାତ୍ୟାଗ କରି ଶଯ୍ୟାରୁ ଉଠି ବସିଲେ । ରାଜଲକ୍ଷ୍ମୀ ଯାହା ଯାହା କହିଥିଲେ, ବୀରବର ସେ ସବୁ

କହିଗଲେ । ତାହା ଶୁଣି ଶକ୍ତିଧର ଆନନ୍ଦିତ ହୋଇ କହିଲା, "ମୋର ଜୀବନ ଧନ୍ୟ; ପ୍ରଭୁଙ୍କର ରାଜ୍ୟରକ୍ଷାରେ ମୋର ଉପଯୋଗ ହେବ । ପିତଃ, ବର୍ତ୍ତମାନ ଆଉ ବିଳମ୍ବର କାରଣ କଅଣ ? ଏପରି କାର୍ଯ୍ୟରେ ହସି ହସି ପ୍ରାଣ ଦେବା ପ୍ରଶଂସାର କଥା । କାରଣ,

ଧନାନି ଜୀବିତଂଚୈବ ପରାର୍ଥେ ପ୍ରାଜ୍ଞ ଉତ୍ସୃଜେତ୍ ।
ସନ୍ନିମିତ୍ତେ ବରଂ ତ୍ୟାଗୋ ବିନାଶେ ନିୟତେ ସତି । ୧୦୨ ।

ବୁଦ୍ଧିମାନ୍ ଲୋକ ପରର ଉପକାର ନିମିତ୍ତ ନିଜର ଧନ ଓ ଜୀବନକୁ ଉତ୍ସର୍ଗ କରିବା କର୍ତ୍ତବ୍ୟ । ଏହି ଶରୀରର ବିନାଶ ନିଶ୍ଚିତ ହୋଇଥିବାରୁ ସତ୍ ଉଦ୍ଦେଶ୍ୟରେ ଏହାକୁ ତ୍ୟାଗ କରିବା ଖୁବ୍ ଭଲ ଅଟେ ।" ୧୦୨ ।

ଶକ୍ତିଧରର ମାତା କହିଲେ, "ଯଦି ଆମେମାନେ ଏହା ନ କରୁଁ, ତେବେ ଅନ୍ୟ କଅଣ କରି ରାଜାଙ୍କଠାରୁ ଗ୍ରହଣ କରୁଥିବା ବେତନର ପରିଶୋଧ କରି (ନିସ୍ତୃତି ପାଇବା) ପାରିବା ?" ଏହିପରି ବିଚାରି ତିନିହେଁଯାକ ସର୍ବମଙ୍ଗଳାଙ୍କ ମନ୍ଦିରକୁ ଗଲେ । ସେଠାରେ ସର୍ବମଙ୍ଗଳାଙ୍କର ପୂଜା କରି ବୀରବର କହିଲେ, "ଦେବି, ପ୍ରସନ୍ନ ହୁଅ । ମହାରାଜ ଶୂଦ୍ରକଙ୍କର ବିଜୟ ହେଉ । ଏହି ଉପହାର ଗ୍ରହଣ କର ।" ଏହା କହି ସେ ପୁତ୍ରର ମସ୍ତକ ଛେଦନ କଲେ । ତତ୍ପରେ ବୀରବର ଚିନ୍ତାକଲେ, "ରାଜାଙ୍କଠାରୁ ଗ୍ରହଣ କରିଥିବା ବେତନରୁ ନିସ୍ତୃତି ପାଇଲି । ବର୍ତ୍ତମାନ ମୋର ଏ ପୁତ୍ରହୀନ ଜୀବନରେ ଆଉ କି ଫଳ ?" ଏହିପରି ବିଚାରି ସେ ନିଜର ମସ୍ତକ ଛେଦନ କଲେ ।

ଏହାପରେ ବୀରବରଙ୍କର ପତ୍ନୀ ମଧ୍ୟ ସ୍ୱାମୀ ଓ ପୁତ୍ରର ବିଚ୍ଛେଦଶୋକରେ କାତର ହୋଇ ସେହିପରି ନିଜର ଶିରଚ୍ଛେଦନ

କଲେ । ଏହି ସବୁ ଘଟନା ଦେଖି ରାଜା ଆଶ୍ଚର୍ଯ୍ୟାନ୍ୱିତ ହୋଇ ଚିନ୍ତାକଲେ—

ଜାୟନ୍ତେ ଚ ମ୍ରିୟନ୍ତେ ଚ ମଦ୍‌ବିଧାଃ କ୍ଷୁଦ୍ରଜନ୍ତବଃ
ଅନେନ ସଦୃଶୋ ଲୋକେ ନ ଭୂତୋ ନ ଭବିଷ୍ୟତି । ୧୦୩ ।

"ମୋ ପରି କେତେ ତୁଚ୍ଛ ଜୀବ ଜନ୍ମ ହେଉଛନ୍ତି, ମରୁଛନ୍ତି । କିନ୍ତୁ ଏହି ବୀରବରଙ୍କ ପରି ଲୋକ ସଂସାରରେ କେହି ଜନ୍ମି ନାହାନ୍ତି କି ଜନ୍ମିବେ ନାହିଁ । ୧୦୩ ।

ଅତଏବ ବୀରବରବର୍ଜିତ ଏ ରାଜ୍ୟରେ ମଧ୍ୟ ମୋର କି ପ୍ରୟୋଜନ ?" ଏଥିରେ ଶୂଦ୍ରକ ନିଜର ମସ୍ତକ ଛେଦନ କରିବା ପାଇଁ ଖଡ୍‌ଗ ଉତ୍ତୋଳନ କଲେ । ତହୁଁ ଭଗବତୀ ସର୍ବମଙ୍ଗଳା ସାକ୍ଷାତ ଦର୍ଶନ ଦେଇ ରାଜାଙ୍କ ହାତକୁ ଧରି ପକାଇ କହିଲେ, "ପୁତ୍ର ! ତୋଠାରେ ମୁଁ ପ୍ରସନ୍ନ ହୋଇଅଛି । ଏପରି ସାହସ କରିବାର ପ୍ରୟୋଜନ ନାହିଁ । ତୋର ଜୀବନ ଗିବାପରେ ମଧ୍ୟ ତୋର ରାଜ୍ୟ ବିନଷ୍ଟ ହେବ ନାହିଁ ।"

ରାଜା ଦେବୀଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି କହିଲେ, "ଦେବି, ମୋର ରାଜ୍ୟ କଅଣ ହେବ ? ଜୀବନରେ ବା କି ପ୍ରୟୋଜନ ? ଯଦି ମୋଠାରେ ଆପଣଙ୍କର ଦୟା ଥାଏ, ତେବେ ମୋର ଅବଶିଷ୍ଟ ଆୟୁ ପରିବର୍ତ୍ତରେ ଏହି ବୀରବରଙ୍କୁ ତାର ପତ୍ନୀ ଓ ପୁତ୍ର ସହିତ ବଞ୍ଚାଇ ଦିଅନ୍ତୁ । ତାହା ନ ହେଲେ ସେମାନେ ଯେଉଁ ଗତି ପାଇଅଛନ୍ତି, ମୁଁ ମଧ୍ୟ ସେହି ଗତି ପ୍ରାପ୍ତ ହେବି ( ଅର୍ଥାତ୍ ନିଜର ମସ୍ତକ ଛେଦନ କରି ପ୍ରାଣ ହରାଇବି ) ।"

ଭଗବତୀ କହିଲେ, "ବତ୍ସ, ତୋର ଏହି ଅଦ୍ଭୁତ ସାହସ ଓ ଭୃତ୍ୟବାତ୍ସଲ୍ୟ ଦେଖି ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଅଛି । ଯାଅ,

ବିଜୟୀ ହୁଅ । ଏହି ରାଜପୁତ୍ର ବୀରବର ମଧ୍ୟ ସପରିବାର ଜୀଇଁଉଠୁ ।”
ଏହା କହି ଦେବୀ ଅଦୃଶ୍ୟ ହୋଇଗଲେ । ଏହାପରେ ବୀରବର ପୁତ୍ର
ଓ ପତ୍ନୀ ସହିତ ପୁନର୍ଜୀବନ ଲାଭକରି ନିଜ ଗୃହକୁ ଚାଲିଗଲେ ।
ରାଜା ମଧ୍ୟ ସେମାନଙ୍କର ଅଲକ୍ଷ୍ୟରେ ଶୀଘ୍ର ଯାଇ ଅନ୍ତଃପୁରରେ
ପ୍ରବେଶ କଲେ ।

ପ୍ରାତଃକାଳରେ ବୀରବର ଦ୍ୱାରଦେଶରେ ଥିବାବେଳେ ରାଜା
ପୁନରାୟ ପଚାରିବାରୁ ବୀରବର କହିଲେ, “ମହାରାଜ, କ୍ରନ୍ଦନ
କରୁଥିବା ରମଣୀଟି ମୋତେ ଦେଖି ଅଦୃଶ୍ୟ ହୋଇଗଲା । ଏହାଛଡ଼ା
ଅନ୍ୟ କିଛି ସମ୍ବାଦ ନାହିଁ ।” ବୀରବରଙ୍କର କଥା ଶୁଣି ରାଜା
ସନ୍ତୁଷ୍ଟ ହୋଇ ଆଶ୍ଚର୍ଯ୍ୟରେ ଚିନ୍ତାକଲେ, “ଏହି ମହାପୁରୁଷ କେଡ଼େ
ପ୍ରଶଂସାର ପାତ୍ର ? କାରଣ—

ପ୍ରିୟଂ ବ୍ରୂୟାଦକୃପଣଃ ଶୂରଃ ସ୍ୟାଦବିକତ୍ଥନଃ ।
ଦାତା ନାଽପାତ୍ରବର୍ଷୀ ଚ ପ୍ରଗଲ୍‌ଭଃ ସ୍ୟାଦନିଷ୍ଠୁରଃ । ୧୦୪ ।

ଦାନଶୀଳ ଲୋକ ପ୍ରିୟ କଥା କହିବା ଉଚିତ । ବୀର ଆତ୍ମଶ୍ଳାଘା
କରିବା ଉଚିତ ନୁହେଁ । ଦାତା ଅପାତ୍ରରେ ଦାନ କରିବା ଅନୁଚିତ
ଓ ପ୍ରଗଳ୍ଭ (ତେଜସ୍ୱୀ) ଲୋକ ନିଷ୍ଠୁର ହେବା ଉଚିତ
ନୁହେଁ । ୧୦୪ ।

ମହାପୁରୁଷମାନଙ୍କର ଏହି ସବୁ ଲକ୍ଷଣ ବୀରବରଙ୍କଠାରେ
ଅଛି । ପ୍ରାତଃକାଳରେ ରାଜା ପରିଷଦ ଡକାଇ ସଭାରେ ସମସ୍ତ
ବୃତ୍ତାନ୍ତ କହି ବୀରବରଙ୍କୁ କର୍ଣ୍ଣାଟ ରାଜ୍ୟ ପ୍ରଦାନ କଲେ ।

ତେଣୁ ଆଗନ୍ତୁକ କାହିଁକି ଜାତିମାନେ ଦୁଷ୍ଟ ହେବେ ? ଆଗନ୍ତୁକ-
ମାନଙ୍କ ମଧ୍ୟରେ ଉତ୍ତମ, ମଧ୍ୟମ ଓ ଅଧମ ଅଛନ୍ତି ।”

ଚକ୍ରବାକ କହିଲା—

ଯୋଽକାର୍ଯ୍ୟଂ କାର୍ଯ୍ୟବଚ୍ଛାସ୍ତି ସ କଂମନ୍ତ୍ରୀ ନୃପେଚ୍ଛୟା ।
ବରଂ ସ୍ୱାମିମନୋଦୁଃଖଂ ତନ୍ନାଶୋ ନ ତ୍ୱକାର୍ଯ୍ୟତଃ । ୧୦୫ ।

ଯେଉଁ ମନ୍ତ୍ରୀ କେବଳ ରାଜାଙ୍କ ଇଚ୍ଛାନୁସାରେ ଅକାର୍ଯ୍ୟକୁ ମଧ୍ୟ କରଣୀୟ ବୋଲି ପରାମର୍ଶ ଦିଏ, ସେ ଦୁଷ୍ଟ ମନ୍ତ୍ରୀ । ବରଂ ପ୍ରଭୁଙ୍କର ମନରେ ଦୁଃଖ ଜାତ ହେଉ; କିନ୍ତୁ ମନ୍ଦକାର୍ଯ୍ୟଦ୍ୱାରା ତାଙ୍କର ବିନାଶ କରିବା ଉଚିତ ନୁହେଁ । ୧୦୫ ।

ବୈଦ୍ୟୋ ଗୁରୁଶ୍ଚ ମନ୍ତ୍ରୀ ଚ ଯସ୍ୟ ରାଜ୍ଞଃ ପ୍ରିୟମ୍ବଦାଃ
ଶରୀର-ଧର୍ମ-କୋଶେଭ୍ୟଃ କ୍ଷିପ୍ରଂ ସ ପରିହୀୟତେ । ୧୦୬ ।

ଯେଉଁ ରାଜାଙ୍କର ବୈଦ୍ୟ, ଗୁରୁ ଓ ମନ୍ତ୍ରୀ ତାଙ୍କର ପ୍ରିୟ କଥା କହନ୍ତି, ସେହି ରାଜା ଅଳ୍ପକାଳ ମଧ୍ୟରେ (ଯଥାକ୍ରମେ) ଶରୀର, ଧର୍ମ ଓ ରାଜକୋଷ ବିହୀନ ହୋଇଥାନ୍ତି । ୧୦୬ । ପ୍ରଭୁ, ଆହୁରି ଶୁଣନ୍ତୁ—

ପୁଣ୍ୟାଲ୍ଲବ୍ଧଂ ଯଦେକେନ ତନ୍ମମାଽପି ଭବିଷ୍ୟତି ।
ହତ୍ୱା ଭିକ୍ଷୁଂ ଯତୋ ମୋହାନ୍ନିଧ୍ୟର୍ଥୀ ନାପିତୋ ହତଃ । ୧୦୭ ।

କେହି ପୁଣ୍ୟ ହେତୁରୁ ଯାହା କିଛି ପାଇଥାଏ, ମୋ ପକ୍ଷରେ ତାହାହିଁ ଘଟିବ । ଏହିପରି ସ୍ଥିର କରି ମୂର୍ଖତାବଶତଃ ଭିକ୍ଷୁକୁ ହତ୍ୟା କରି ରତ୍ନଲୋଭୀ ନାପିତ ନିଜେ ନିହତ ହୋଇଥିଲା । ୧୦୭ ।

ରାଜା ପଚାରିଲେ—ସେ କଥା (ନାପିତ କଥା) କଅଣ ?

ଚକ୍ରବାକ କହିଲା—

## କଥା-୯

ଅଯୋଧ୍ୟାରେ ଚୂଡ଼ାମଣି ନାମରେ ଜଣେ କ୍ଷତ୍ରିୟ ଥିଲେ । ଧନପ୍ରାପ୍ତି କାମନା କରି ସେ ଅନେକ କାଳ ପର୍ଯ୍ୟନ୍ତ ବହୁ କଷ୍ଟ ସହି ଭଗବାନ୍ ଅର୍ଦ୍ଧଚନ୍ଦ୍ରଚୂଡ଼ ଶିବଙ୍କର ଆରାଧନା କଲେ । ତାଙ୍କର ପାପ

କଷ୍ଟ ହୋଇଯିବାରୁ ଭଗବାନ୍ ଶିବଙ୍କର ଆଦେଶରେ ଯକ୍ଷେଶ୍ୱର କୁବେର ତାଙ୍କୁ ସ୍ୱପ୍ନରେ ଦର୍ଶନ ଦେଇ ଆଦେଶ କଲେ—"ଆଜି ସକାଳ ହେଲେ ତୁମେ କ୍ଷୌର ହୋଇ ଗୋଟିଏ ଯଷ୍ଟି ଧରି ନିଜ ଘରର ଦ୍ୱାର ନିକଟରେ ଲୁଚି ରହିବ । ତତ୍ପରେ ଯେଉଁ ଭିକ୍ଷୁକକୁ ତୁମର ଅଗଣାରେ ପ୍ରବେଶ କରିବାର ଦେଖିବ, ତାକୁ ନିର୍ଦ୍ଦୟଭାବରେ ଯଷ୍ଟିରେ ପ୍ରହାର କରି ବଧ କରିବ । ତାହାହେଲେ ସେହି ଭିକ୍ଷୁକ ତତ୍‌କ୍ଷଣାତ୍ ସୁବର୍ଣ୍ଣକଳସରେ ପରିଣତ ହୋଇଯିବ । ସେହି ସ୍ୱର୍ଣ୍ଣ-କଳସ ଦ୍ୱାରା ତୁମେ ଯାବଜ୍ଜୀବନ ସୁଖରେ ରହିପାରିବ ।" କ୍ଷତ୍ରିୟ ସେହିପରି କରିବାରୁ ଠିକ୍ ତାହାହିଁ ଘଟିଲା ।

କ୍ଷୌର କରିବାପାଇଁ ଯେଉଁ ନାପିତ ଆସିଥିଲା ଏହିସବୁ ଘଟଣା ଦେଖି ବିଚାରିଲା, "ସୁନା ପାଇବାର ଏହାହିଁ ହେଉଛି ଉପାୟ । ତେବେ ମୁଁ ମଧ୍ୟ କାହିଁକି ସେହିପରି ନ କରିବି ?" ସେହିଦିନଠାରୁ ନାପିତ ପ୍ରତିଦିନ ସେହିପରି ଯଷ୍ଟି ଧରି ଲୁଚି ରହି ଭିକ୍ଷୁ ଆସିବାପାଇଁ ଅପେକ୍ଷା କରି ରହିଲା । ଦିନେ ଜଣେ ଭିକ୍ଷୁକୁ ଅଗଣାରେ ଦେଖି ତାକୁ ଯଷ୍ଟି ପ୍ରହାରରେ ବଧ କଲା । ସେହି ଅପ-ରାଧରେ ରାଜପୁରୁଷମାନେ ତାକୁ ପ୍ରାଣଦଣ୍ଡ ଦେଲେ । ଏହି ହେତୁରୁ ମୁଁ 'କେହି ପୁଣ୍ୟ ହେତୁରୁ ଯାହା କରୁଛି'—ଇତ୍ୟାଦି କହିଥିଲି ।

ରାଜା କହିଲେ—

ପୁରାବୃତ୍ତକଥୋଦ୍‌ଗାରୈଃ କଥଂ ନିର୍ଣ୍ଣୀୟତେ ପରଃ
ସ୍ୟାନ୍ନିଷ୍କାରଣବନ୍ଧୁର୍ବା, କିଂ ବା ବିଶ୍ୱାସଘାତକଃ । ୧୦୮ ।

ପ୍ରାଚୀନ କଥା କହିବାଦ୍ୱାରା କିପରି ସ୍ଥିର କରାଯାଇ ପାରିବ ଯେ ଏହି ଆଗନ୍ତୁକ ନିଃସ୍ୱାର୍ଥପର ବନ୍ଧୁ ଅଥବା ବିଶ୍ୱାସ-ଘାତକ ? ୧୦୮ ।

ସେ କଥା ଥାଉ, ବର୍ତ୍ତମାନ ଉପସ୍ଥିତ ବିଷୟ ସମ୍ବନ୍ଧରେ ବିଚାର କରାଯାଉ । ଯଦି ଚିତ୍ରବର୍ଣ୍ଣ ମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ସେନା-ନିବାସ ସ୍ଥାପନ କରିଥାଏ, ତେବେ ବର୍ତ୍ତମାନ କଅଣ କରିବାକୁ ହେବ ?"

ମନ୍ତ୍ରୀ କହିଲେ, "ପ୍ରଭୁ, ସେଠାରୁ ଆସିଥିବା ଗୁପ୍ତଚରଠାରୁ ମୁଁ ଶୁଣିଲି ଯେ ଚିତ୍ରବର୍ଣ୍ଣ, ମହାମନ୍ତ୍ରୀ ଗୃଧ୍ରଙ୍କର ଉପଦେଶକୁ ଗ୍ରହଣ ନ କରି ତାଙ୍କୁ ତିରସ୍କାର କରିଛନ୍ତି । ତେଣୁ ସେହି ମୂର୍ଖ ଚିତ୍ରବର୍ଣ୍ଣଙ୍କୁ ଜୟ କରାଯାଇ ପାରିବ । କଥିତ ଅଛି—

ଲୁବ୍ଧଃ କ୍ରୂରୋଽଲସୋଽସତ୍ୟଃ ପ୍ରମାଦୀ ଭୀରୁରସ୍ଥିରଃ
ମୂଢ଼ୋ ଯୋଧାଽବମନ୍ତା ଚ ସୁଖଚ୍ଛେଦ୍ୟୋ ରିପୁଃ ସ୍ମୃତଃ । ୧୦୯ ।

ଲୋଭୀ, ନିର୍ଦ୍ଦୟ, ଅଳସ, ମିଥ୍ୟାବାଦୀ, ଅସାବଧାନ, ଭୟାଳୁ, ଅସ୍ଥିର, ମୂର୍ଖ, ଯୋଦ୍ଧାଙ୍କର ଅପମାନକାରୀ ଶତ୍ରୁକୁ ସହଜରେ ଜୟ କରାଯାଇପାରେ । ୧୦୯ ।

ତେଣୁ ସେ (ଚିତ୍ରବର୍ଣ୍ଣ) ଯେ ପର୍ଯ୍ୟନ୍ତ ଆମର ଦୁର୍ଗ ଅବରୋଧ କରିନାହାଁନ୍ତି ସେ ପର୍ଯ୍ୟନ୍ତ ତାର ସୈନ୍ୟମାନଙ୍କୁ ନଦୀ, ପର୍ବତ, ବନ ଓ ରାସ୍ତାରେ ବଧ କରିବା ନିମନ୍ତେ ଆମର ସାରସ ପ୍ରଭୃତି ସେନାପତି-ମାନଙ୍କୁ ନିଯୁକ୍ତ କରାଯାଉ । ଆହୁରି କଥିତ ଅଛି—

ଦୀର୍ଘବର୍ତ୍ମ ପରିଶ୍ରାନ୍ତଂ ନଦ୍ୟଦ୍ରିବନସଙ୍କୁଳମ୍ ।
ଘୋରାଗ୍ନିଭୟ ସନ୍ତ୍ରସ୍ତଂ କ୍ଷୁତ୍ପିପାସାର୍ଦ୍ଦିତଂ ତଥା । ୧୧୦ ।
ପ୍ରମତ୍ତଂ ଭୋଜନବ୍ୟଗ୍ରଂ ବ୍ୟାଧିଦୁର୍ଭିକ୍ଷପୀଡ଼ିତମ୍ ।
ଅସଂସ୍ଥିତମଭୂୟିଷ୍ଠଂ ବୃଷ୍ଟିପାତସମାକୁଳମ୍ । ୧୧୧ ।
ପଙ୍କପାଂଶୁଜଳାଚ୍ଛନ୍ନଂ ସୁବ୍ୟସ୍ତଂ ଦସ୍ୟୁବିଦ୍ରୁତମ୍ ।
ଏବମ୍ଭୂତଂ ମହୀପାଳଃ ପରସୈନ୍ୟଂ ବିଘାତୟେତ୍ । ୧୧୨ ।

ଧର୍ମପଥ ଅତିକ୍ରମ କରିଥିବାରୁ କ୍ଲାନ୍ତ, ନଦୀ‌ପର୍ବତବନ ହେତୁରୁ ବ୍ୟାକୁଳ, ଅଗ୍ନିଭୟ ହେତୁରୁ ତ୍ରସ୍ତ, କ୍ଷୁଧା ଓ ପିପାସାରେ ପୀଡ଼ିତ, ଅସାବଧାନ, ଭୋଜନ ପାଇଁ ଅଧୀର, ରୋଗ ଓ ଖାଦ୍ୟାଭାବରେ ପୀଡ଼ିତ, ଅବ୍ୟବସ୍ଥିତ, ଅଳ୍ପସଂଖ୍ୟକ, ବୃଷ୍ଟି ଓ ପ୍ରବଳ ବାୟୁଦ୍ୱାରା ଆକୁଳ, ପଙ୍କ ପାଉଁଶ ଜଳରେ ଆଚ୍ଛନ୍ନ, ନିଶ୍ଚିନ୍ତ, ଦସ୍ୟୁମାନଙ୍କଦ୍ୱାରା ଉପଦ୍ରୁତ—ଏଭଳି ଶତ୍ରୁସୈନ୍ୟମାନଙ୍କୁ ରାଜା ବିନାଶ କରିଦେବା ଉଚିତ । ୧୧୦-୧୧୨ । ପୁଣି—

ଅବସ୍କନ୍ଦଭୟାଦ୍ରାଜା ପ୍ରଜାଗର କୃତଶ୍ରମମ୍ ।
ଦିବା ସୁପ୍ତଂ ସମାହନ୍ୟାନ୍ନିଦ୍ରାବ୍ୟାକୁଳସୈନିକାନ୍ । ୧୧୩ ।

ଆକସ୍ମିକ ଆକ୍ରମଣ ଭୟରେ ଉଜାଗର ରହି କ୍ଲାନ୍ତ ହୋଇ-ଥିବା, ଦିନରେ ଶୋଇ ରହିଥିବା ଓ ନିଦ୍ରାରେ ବ୍ୟାକୁଳ ସୈନ୍ୟ-ମାନଙ୍କୁ ହତ୍ୟା କରିବା ରାଜାଙ୍କର କର୍ତ୍ତବ୍ୟ । ୧୧୩ ।

ଏହି ହେତୁରୁ ଆମର ସେନାପତିମାନେ ଅବସର ଦେଖି ଦିବାରାତ୍ର ଶତ୍ରୁର ଅସାବଧାନ ସୈନ୍ୟମାନଙ୍କୁ ବଧ କରନ୍ତୁ ।”

ସେହିପରି କରାଯିବାରୁ ଚିତ୍ରବର୍ଣ୍ଣଙ୍କର ବହୁ ସଂଖ୍ୟକ ସୈନ୍ୟ ଓ ସେନାପତି ନିହତ ହେଲେ । ତହୁଁ ଚିତ୍ରବର୍ଣ୍ଣ ବିଷଣ୍ଣ ହୋଇ ଦୂର-ଦର୍ଶୀଙ୍କୁ କହିଲେ—ପିତଃ, ତୁମେ କାହିଁକି ମୋତେ ଏପରି ଉପେକ୍ଷା କରୁଛ ? ମୁଁ କଅଣ କିଛି ଅପମାନ ଦେଇଛି ? କଥିତ ଅଛି—

ନ ରାଜ୍ୟଂ ପ୍ରାପ୍ତମିତ୍ୟେବ ବର୍ତ୍ତିତବ୍ୟମସାମ୍ପ୍ରତମ୍
ଶ୍ରିୟଂ ହ୍ୟବିନୟୋ ହନ୍ତି ଜରା ରୂପମିବୋତ୍ତମମ୍ । ୧୧୪ ।

‘ଏବେ ମୋତେ ରାଜ୍ୟ ମିଳିଗଲା’ ଏହିପରି ବିଚାରି ଅନୁଚିତ ଆଚରଣ କରିବା ରାଜାଙ୍କ ପକ୍ଷରେ ଅନୁଚିତ । କାରଣ, ଜରା

ଯେପରି ସୁନ୍ଦର ରୂପକୁ ନାଶ କରିଦିଏ, ସେହିପରି ଧୃଷ୍ଟତା (ଅବିନୟ) ରାଜଲକ୍ଷ୍ମୀଙ୍କୁ ବିନାଶ କରିଥାଏ । ୧୧୪ । ପୁଣି—

ଦକ୍ଷଃ ଶ୍ରିୟମଧିଗଚ୍ଛତି, ପଥ୍ୟାଶୀ କଲ୍ୟତାଂ, ସୁଖମରୋଗୀ ।
ଉଦ୍ୟୁକ୍ତୋ ବିଦ୍ୟାନ୍ତଂ, ଧର୍ମାର୍ଥଯଶାଂସି ଚ ବିନୀତଃ । ୧୧୫ ।

ଦକ୍ଷ ବ୍ୟକ୍ତି ଲକ୍ଷ୍ମୀଙ୍କୁ, ମିତାହାରୀ ଲୋକ ଆରୋଗ୍ୟକୁ, ନୀରୋଗ ଲୋକ ସୁଖକୁ, ଉଦ୍ୟୋଗୀ ଲୋକ ବିଦ୍ୟାକୁ ଓ ବିନୀତ ଲୋକ ଧର୍ମ-ଅର୍ଥ-ଯଶକୁ ଲାଭ କରିଥାଏ । ୧୧୫ ।

ଗୃଧ୍ର କହିଲା—"ମହାରାଜ, ଶୁଣନ୍ତୁ—

ଅବିଦ୍ୱାନପି ଭୂପାଳୋ ବିଦ୍ୟାବୃଦ୍ଧୋପସେବୟା ।
ପରାଂ ଶ୍ରିୟମବାପ୍ନୋତି ଜଳାସନ୍ନତରୁର୍ଯଥା । ୧୧୬ ।

ରାଜା ବିଦ୍ୱାନ୍ ହୋଇ ନ ଥିଲେ ହେଁ ଜଳର ନିକଟବର୍ତ୍ତୀ ବୃକ୍ଷ ପୁଷ୍ଟ ହେଲାପରି ବିଦ୍ୟା ବୃଦ୍ଧମାନଙ୍କର ସେବାଦ୍ୱାରା ରାଜଲକ୍ଷ୍ମୀଙ୍କୁ ଲାଭ କରିଥାନ୍ତି । ୧୧୬ । ପୁଣି—

ପାନଂ ସ୍ତ୍ରୀ ମୃଗୟା ଦ୍ୟୂତମର୍ଥଦୂଷଣମେବ ଚ ।
ବାଗ୍‌ଦଣ୍ଡୟୋଶ୍ଚ ପାରୁଷ୍ୟଂ ବ୍ୟସନାନି ମହୀଭୁଜାମ୍ । ୧୧୭ ।

ମଦ୍ୟପାନ, ନାରୀ ପ୍ରତି ଆସକ୍ତି, ମୃଗୟା, ଦ୍ୟୂତକ୍ରୀଡ଼ା, ମନ୍ଦ-ଉପାୟରେ ଅର୍ଥସଂଗ୍ରହ ଏବଂ ବାକ୍ୟରେ ଓ ଦଣ୍ଡ ଦାନରେ କଠୋରତା—ଏଗୁଡ଼ିକ ରାଜାଙ୍କର ବ୍ୟସନ (ଦୁର୍ଗୁଣ) ଅଟେ । ୧୧୭ ।

ନ ସାହସୈକାନ୍ତ-ରସାନୁବର୍ତ୍ତିନା
ନ ଚାପ୍ୟୁପାୟୋପହତାନ୍ତରାତ୍ମନା ।
ବିଭୂତୟଃ ଶକ୍ୟମବାପ୍ତୁ ମୂର୍ଜିତା
ନୟେ ଚ ଶୌର୍ଯ୍ୟେ ଚ ବସନ୍ତି ସମ୍ପଦଃ । ୧୧୮ ।

ଯିଏ ଏକମାତ୍ର ସାହସକୁ ଅବଲମ୍ବନ କରିଥାଏ ଓ ଉପାୟ ଚିନ୍ତା କରେ ନାହିଁ ସେ ମହାନ୍ ସମ୍ପଦ ଲାଭ କରିବାକୁ ଅକ୍ଷମ ହୁଏ । ଯେଉଁଠାରେ ନୀତି ଓ ଶୌର୍ଯ୍ୟ ଥାଏ, ସେହିଠାରେହିଁ ସମ୍ପତ୍ତି ବାସ କରେ । ୧୧୮ ।

ତୁମେ ନିଜ ସୈନ୍ୟମାନଙ୍କର ସାହସ ଦେଖି କେବଳ ସାହସକୁ ଅବଲମ୍ବନ କରି ମୋର ନୀତିସମ୍ମତ ଉପଦେଶ ପ୍ରତି ଅବହିତ ନ ହୋଇ କଥାରେ ମଧ୍ୟ କଠୋରତା ଦେଖାଇଅଛ । ଏବେ ଦୁର୍ନୀତିର ଫଳ ଭୋଗ କରିବାକୁ ଯାଉଅଛ । କଥିତ ଅଛି—

ଦୁର୍ମନ୍ତ୍ରିଣଂ କମୁପଯାନ୍ତି ନ ନୀତିଦୋଷାଃ ?
ସନ୍ତାପୟନ୍ତି କମପଥ୍ୟଭୁଜଂ ନ ରୋଗାଃ ?
କଂ ଶ୍ରୀର୍ନ ଦର୍ପୟତି ? କଂ ନ ନିହନ୍ତି ମୃତ୍ୟୁଃ ?
କଂ ସ୍ତ୍ରୀକୃତା ନ ବିଷୟାଃ ପରିତାପୟନ୍ତି ? ୧୧୯ ।

ଯେଉଁ ରାଜାଙ୍କର ଦୁଷ୍ଟମନ୍ତ୍ରୀ ଥାଏ ସେ କେଉଁ ନୈତିକ ଦୋଷରେ ନ ପଡ଼ନ୍ତି ? ଯେ ଅପଥ୍ୟ ଭୋଜନ କରେ ତାକୁ କେଉଁ ରୋଗ କଷ୍ଟ ନ ଦିଏ ? ସମ୍ପଦ ଲାଭ କରି କିଏ ଗର୍ବ ନ କରେ ? ମୃତ୍ୟୁ କାହାକୁ ଅବା ବିନାଶ ନ କରେ ? ସ୍ତ୍ରୀ ସମ୍ବନ୍ଧୀୟ ବିଷୟରେ ଲିପ୍ତ ହୋଇ କିଏ ଦୁଃଖ ଭୋଗ ନ କରେ ? ୧୧୯ । ଆହୁରି ମଧ୍ୟ—

ମୁଦଂ ବିଷାଦଃ ଶରଦଂ ହିମାଗମ-
ସ୍ତମୋ ବିବସ୍ୱାନ୍ ସୁକୃତଂ କୃତଘ୍ନତା ।
ପ୍ରିୟୋପପତ୍ତିଃ ଶୁଚମାପଦଂ ନୟଃ
ଶ୍ରିୟଃ ସମୃଦ୍ଧା ଅପି ହନ୍ତି ଦୁର୍ନୟଃ । ୧୨୦ ।

ବିଷାଦ ଆନନ୍ଦକୁ, ହେମନ୍ତଋତୁ ଶରତକୁ, ସୂର୍ଯ୍ୟ ଅନ୍ଧକାରକୁ, କୃତଘ୍ନତା ସୁକୃତକୁ, ଇଷ୍ଟପ୍ରାପ୍ତି ଶୋକକୁ, ନୀତି ବିପଦକୁ ତଥା ଦୁର୍ନୀତି ଐଶ୍ୱର୍ଯ୍ୟମୟୀ ଲକ୍ଷ୍ମୀଙ୍କୁ ନଷ୍ଟ କରିଥାଏ । ୧୨୦ ।

ତତ୍ପରେ ମୁଁ ମଧ୍ୟ ଚିନ୍ତା କଲି—"ଏ ରାଜା ବୁଦ୍ଧିହୀନ । ତାହା ହୋଇ ନ ଥିଲେ କାହିଁକି ବାକ୍‌ଜାଲରୂପକ ଉଲ୍‌କାଦ୍ୱାରା ନୀତିଶାସ୍ତ୍ରସମ୍ମତ ଉପଦେଶ-ରୂପକ ଚନ୍ଦ୍ରକିରଣକୁ ଆଚ୍ଛାଦିତ କରନ୍ତେ ? କାରଣ—

ଯସ୍ୟ ନାସ୍ତି ସ୍ୱୟଂ ପ୍ରଜ୍ଞା ଶାସ୍ତ୍ରଂ ତସ୍ୟ କରୋତି କିମ୍ ?
ଲୋଚନାଭ୍ୟାଂ ବିହୀନସ୍ୟ ଦର୍ପଣଃ କିଂ କରିଷ୍ୟତି ? ୧୨୧ ।

ଯାହାର ନିଜର ବୁଦ୍ଧି ନାହିଁ, ଶାସ୍ତ୍ର ତାର କି ଉପକାର କରିପାରିବ ? ଯାହାର ଦୁଇଟି ଯାକ ଚକ୍ଷୁ ବିନଷ୍ଟ ହୋଇଛି, ଦର୍ପଣ ତାର କି ଉପକାରରେ ଲାଗିବ ? ୧୨୧ ।

ଏହାପରେ ବିଗୁରେ ମୁଁ ତୁନି ହୋଇ ରହିଲି ।" ତହୁଁ ରାଜା ହାତ ଯୋଡ଼ି କହିଲେ—ପିତଃ, ମୁଁ ଏ ଅପରାଧ କରିଛି । ଏବେ ମୁଁ କିପରି ଅବଶିଷ୍ଟ ସୈନ୍ୟସହିତ ବିନ୍ଧ୍ୟାଚଳକୁ ଫେରିଯାଇ ପାରିବି ତାହାର ଉପାୟ କୁହ । ଗୃଧ୍ର ମନେ ମନେ ଚିନ୍ତାକଲା—ଏ ସ୍ଥଳରେ ବର୍ତ୍ତମାନ କୌଣସି ନା କୌଣସି ଉପାୟ କରିବାକୁ ହେବ । କାରଣ—

ଦେବତାସୁ ଗୁରୌ ଗୋଷୁ ରାଜସୁ ବ୍ରାହ୍ମଣେଷୁ ଚ ।
ନିୟନ୍ତବ୍ୟଃ ସଦା କୋପୋ ବାଳବୃଦ୍ଧାତୁରେଷୁ ଚ । ୧୨୨ ।

ଦେବତା, ଗୁରୁ, ଗାଈ, ରାଜା, ବ୍ରାହ୍ମଣ, ବାଳକ, ବୃଦ୍ଧ ଓ ରୋଗୀ—ଏମାନଙ୍କ ପ୍ରତି ନିଜର କ୍ରୋଧକୁ ସର୍ବଦା ଦମନ କରିବା କର୍ତ୍ତବ୍ୟ । ୧୨୨ ।

ମନ୍ତ୍ରୀ ହସି ହସି କହିଲେ—ମହାରାଜ, ଭୟ କରନ୍ତୁ ନାହିଁ; ଧୈର୍ଯ୍ୟ ଧାରଣ କରନ୍ତୁ । ଶୁଣନ୍ତୁ ପ୍ରଭୁ—

ମନ୍ତ୍ରିଣାଂ ଭିନ୍ନସନ୍ଧାନେ ଭିଷଜାଂ ସାନ୍ନିପାତିକେ
କର୍ମଣି ବ୍ୟଜ୍ୟତେ ପ୍ରଜ୍ଞା ସୁସ୍ଥେ କୋଽବା ନ ପଣ୍ଡିତଃ । ୧୨୩ ।

ଭେଦ ଉପସ୍ଥିତ ହେଲେ ତାକୁ ମିଳନ କରାଇବା କାର୍ଯ୍ୟରେ ମନ୍ତ୍ରୀଙ୍କର ଓ ସନ୍ନିପାତ ରୋଗୀକୁ ଆରୋଗ୍ୟ କରିବାରେ ବୈଦ୍ୟଙ୍କର ବୁଦ୍ଧି ପ୍ରକାଶ ପାଏ । ସାମାନ୍ୟ ପରିସ୍ଥିତିରେ ବା ସୁସ୍ଥ ଅବସ୍ଥାରେ କିଏ ଅବା ପଣ୍ଡିତ ହୋଇ ନ ଥାଏ ? ୧୨୩ । ଆହୁରି—

ଆରଭନ୍ତେଽଲ୍ପମେବାଜ୍ଞାଃ କାମଂ ବ୍ୟଗ୍ରା ଭବନ୍ତି ଚ ।
ମହାରମ୍ଭାଃ କୃତଧିୟସ୍ତିଷ୍ଠନ୍ତି ଚ ନିରାକୁଳାଃ । ୧୨୪ ।

ବୁଦ୍ଧିହୀନ ଲୋକେ ସାମାନ୍ୟ କାର୍ଯ୍ୟ ଆରମ୍ଭ କଲେହେଁ ଅତ୍ୟନ୍ତ ଅଧୀର ( ବ୍ୟଗ୍ର ) ହୋଇ ପଡ଼ନ୍ତି; କିନ୍ତୁ ବୁଦ୍ଧିମାନ୍ ଲୋକେ ମହାନ୍ କାର୍ଯ୍ୟ ଆରମ୍ଭ କଲେ ମଧ୍ୟ ଅତ୍ୟନ୍ତ ଧୈର୍ଯ୍ୟଶାଳୀ ହୋଇ ରହନ୍ତି । ୧୨୪ ।

ତେଣୁ ଏ ବିପଦରେ ମଧ୍ୟ ଆପଣଙ୍କ ପ୍ରତାପରୁ ଶତ୍ରୁର ଦୁର୍ଗକୁ ଭାଙ୍ଗି, ଯଶ ଓ ପ୍ରତାପ ସହିତ ଆପଣଙ୍କୁ ଅଳ୍ପକାଳ ମଧ୍ୟରେ ବିନ୍ଧ୍ୟାଚଳକୁ ନେଇଯିବି ।” ରାଜା କହିଲେ, “ବର୍ତ୍ତମାନ ଅଳ୍ପସଂଖ୍ୟକ ସୈନ୍ୟ ସାହାଯ୍ୟରେ ତାହା କିପରି କରାଯାଇ ପାରିବ ?” ଗୃଧ୍ର କହିଲା, “ମହାରାଜ, ସବୁ ହୋଇ ପାରିବ । କାରଣ ବିଜୟାଭିଳାଷୀ ରାଜାଙ୍କର କ୍ଷିପ୍ର କାର୍ଯ୍ୟସାଧନ ହେଉଛି ବିଜୟଲାଭର ଲକ୍ଷଣ । ତେଣୁ ସହସା ଦୁର୍ଗ ଉପରେ ଆକ୍ରମଣ କରି ଦେବାକୁ ହେବ ।”

ଶତ୍ରୁପକ୍ଷର ସନ୍ଧାନ ଆଣିବା ଲାଗି ପ୍ରେରିତ ଗୁପ୍ତଚର ବକ ଉପସ୍ଥିତ ହୋଇ ହିରଣ୍ୟଗର୍ଭଙ୍କୁ କହିଲା, "ମହାରାଜ, ରାଜା ଚିତ୍ରବର୍ଣ୍ଣଙ୍କର ଅଳ୍ପ ସୈନ୍ୟ ଅଛନ୍ତି । ତଥାପି ସେ ମନ୍ତ୍ରୀ ଗୃଧ୍ରଙ୍କ ପରାମର୍ଶରେ ଆମ ଦୁର୍ଗକୁ ଅବରୋଧ କରିବେ ।" ରାଜହଂସ କହିଲେ, "ହେ ସର୍ବଜ୍ଞ, ବର୍ତ୍ତମାନ କଅଣ କରିବାକୁ ହେବ ?" ଚକ୍ରବାକ କହିଲା, "ଆମ ନିଜ ସୈନ୍ୟମାନଙ୍କ ମଧ୍ୟରେ ଉତ୍ତମ ଅଧମ ବିଚାର କରିବା ଉଚିତ । ତାହା ସ୍ଥିର କଲାପରେ ସେମାନଙ୍କ ମଧ୍ୟରେ ସ୍ୱର୍ଣ୍ଣ ବସ୍ତ୍ର ପ୍ରଭୃତି ଯଥାଯୋଗ୍ୟ ପୁରସ୍କାର ବିତରଣ କରିବା ଆବଶ୍ୟକ । କାରଣ—

ଯଃ କାକଣୀମପ୍ୟପଥପ୍ରପନ୍ନାଂ,
ସମୁଦ୍ଧରେନ୍ନିଷ୍କସହସ୍ରତୁଲ୍ୟାମ୍ ।
କାଳେଷୁ କୋଟିଷ୍ୱପି ମୁକ୍ତହସ୍ତ—
ସ୍ତଂ ରାଜସିଂହଂ ନ ଜହାତି ଲକ୍ଷ୍ମୀଃ । ୧୨୫ ।

ଯେଉଁ ରାଜା ଅସ୍ଥାନରେ ପଡ଼ିଥିବା ସାମାନ୍ୟ କଉଡ଼ାଏ କଉଡ଼ିକୁ ସ୍ୱର୍ଣ୍ଣମୁଦ୍ରା ତୁଲ୍ୟ ମନେକରି ଉଠାଇ ନିଏ, ପୁଣି ସମୟରେ କୋଟି କୋଟି ମୁଦ୍ରା ବ୍ୟୟ କରିବାରେ ମଧ୍ୟ ମୁକ୍ତହସ୍ତ ହୁଏ, ସେହି ରାଜଶ୍ରେଷ୍ଠଙ୍କୁ ଲକ୍ଷ୍ମୀ କେବେ ତ୍ୟାଗ କରି ଯାଆନ୍ତି ନାହିଁ । ୧୨୫ ।
ଆହୁରି—

କ୍ରତୌ ବିବାହେ ବ୍ୟସନେ ରିପୁକ୍ଷୟେ,
ଯଶସ୍କରେ କର୍ମଣି ମିତ୍ରସଂଗ୍ରହେ ।
ପ୍ରିୟାସୁ ନାରୀଷ୍ୱଧନେଷୁ ବାନ୍ଧବେ-
ଷ୍ୱତିବ୍ୟୟୋ ନାସ୍ତି ନରାଧିପାଷ୍ଟସୁ । ୧୨୬ ।

ଯଜ୍ଞରେ, ବିବାହରେ, ବିପତ୍ତିକାଳରେ, ଶତ୍ରୁକୁ ନାଶ କରିବାରେ, କୀର୍ତ୍ତିକର କାର୍ଯ୍ୟରେ, ମିତ୍ରତା ସ୍ଥାପନ କରିବାରେ, ପ୍ରିୟରମଣୀ ବିଷୟରେ, ବନ୍ଧୁମାନଙ୍କଠାରେ—ଏହି ଆଠଟି ସ୍ଥଳରେ ରାଜା ଯେତେ ବ୍ୟୟ କଲେ ହେଁ ତାଙ୍କୁ ଅତିବ୍ୟୟୀ ବୋଲି କୁହାଯାଏ ନାହିଁ । ୧୨୬ । ଯେହେତୁ—

ମୂର୍ଖଃ ସ୍ୱଳ୍ପବ୍ୟୟତ୍ରାସାତ୍ ସର୍ବନାଶଂ କରୋତି ହି ।
କଃ ସୁଧୀଃ ସନ୍ତ୍ୟଜେଦ୍‌ଭାଣ୍ଡଂ ଶୁଳ୍କସ୍ୟୈବାତିସାଧ୍ୱସାତ୍ । ୧୨୭ ।

ମୂର୍ଖ ସାମାନ୍ୟ ବ୍ୟୟକୁ ଭୟକରି ସର୍ବନାଶ କରିଥାଏ । ଆଚ୍ଛା, କେଉଁ ବୁଦ୍ଧିମାନ୍ ଲୋକ ଶୁଳ୍କ ( ରାଜକର ) ଭୟରେ ନିଜର ଜିନିଷକୁ ତ୍ୟାଗ କରେ କି ?" ୧୨୭ ।

ରାଜା କହିଲେ, "ବର୍ତ୍ତମାନ ସମୟରେ ଅତିରିକ୍ତ ବ୍ୟୟ କରିବା ଉଚିତ ହେବ କି ? କଥିତ ଅଛି 'ବିପଦକାଳ ପାଇଁ ଧନ ସଞ୍ଚୟ କରି ରଖିବ' ।" ମନ୍ତ୍ରୀ କହିଲେ, "ଆପଣ ଲକ୍ଷ୍ମୀବନ୍ତ, ଆପଣଙ୍କର ବିପତ୍ତି କଅଣ ?" ରାଜା କହିଲେ, "ଦୈବାତ୍ କେବେ ଲକ୍ଷ୍ମୀ ଚାଲି ଯାଇପାରନ୍ତି ।" ମନ୍ତ୍ରୀ କହିଲେ, "ସଞ୍ଚୟ କରି ରଖିଥିଲେ ମଧ୍ୟ ଧନ ବିନଷ୍ଟ ହୋଇ ଯାଇପାରେ । ତେଣୁ ମହାରାଜ, କୃପଣତା ତ୍ୟାଗ କରି ନିଜର ସୈନ୍ୟମାନଙ୍କୁ ଧନମାନ ଆଦି ପୁରସ୍କାର ଦିଅନ୍ତୁ । କଥିତ ଅଛି—

ପରସ୍ପରଜ୍ଞାଃ ସଂହୃଷ୍ଟାସ୍ତ୍ୟକ୍ତୁଂ ପ୍ରାଣାନ୍ ସୁନିଶ୍ଚିତାଃ ।
କୁଳୀନାଃ ପୂଜିତାଃ ସମ୍ୟଗ୍‌ବିଜୟନ୍ତେ ଦ୍ୱିଷଦ୍‌ବଳମ୍ । ୧୨୮ ।

ପରସ୍ପର ଶୁଭକାଙ୍କ୍ଷୀ, ରାଜାଙ୍କ ବେତନ ଓ ପୁରସ୍କାରାଦିରେ ପ୍ରସନ୍ନ, ଯୁଦ୍ଧରେ ପ୍ରାଣ ଦେବାକୁ କୃତସଂକଳ୍ପ, କୁଳୀନ,

ରାଜାମନ୍ତ୍ରୀ ପ୍ରଭୃତିଙ୍କ ଦ୍ୱାରା ସମ୍ମାନିତ ସୈନ୍ୟମାନେ ଶତ୍ରୁସୈନ୍ୟ-ମାନଙ୍କୁ ସମ୍ପୂର୍ଣ୍ଣରୂପେ ଜୟ କରିଥାନ୍ତି । ୧୨୮ । ପୁଣି—

ସୁଭଟାଃ ଶୀଳସମ୍ପନ୍ନାଃ ସଂହତାଃ କୃତନିଶ୍ଚୟାଃ ।
ଅପି ପଞ୍ଚଶତଂ ଶୂରା ନିଘ୍ନନ୍ତି ରିପୁବାହିନୀମ୍ । ୧୨୯ ।

ବଳଶାଳୀ, ସଚ୍ଚରିତ୍ର, ସଂହତ (ପରସ୍ପର ମିଳିତ) ଓ ଦୃଢ଼-ପ୍ରତିଜ୍ଞ ପାଞ୍ଚଶହ ବୀର ସୈନ୍ୟ ଶତ୍ରୁର ବିରାଟ ସେନାଦଳକୁ ବିନାଶ କରିପାରନ୍ତି । ୧୨୯ ।

ଶିଷ୍ଟୈରପ୍ୟବିଶେଷଜ୍ଞ ଉଗ୍ରଶ୍ଚ କୃତନାଶକଃ
ତ୍ୟଜ୍ୟତେ କିଂ ପୁନର୍ନାନ୍ୟୈର୍ଯଶ୍ଚାପ୍ୟାତ୍ମମ୍ଭରିର୍ନରଃ । ୧୩୦ ।

ବିଶେଷ ଯୋଗ୍ୟତାହୀନ, ଉଦ୍ଧତ, କାର୍ଯ୍ୟନାଶକାରୀ, ଆତ୍ମମ୍ଭରୀ ଲୋକକୁ ସାଧୁଲୋକମାନେ ମଧ୍ୟ ତ୍ୟାଗ କରିଥାନ୍ତି । ଅନ୍ୟ ସାଧାରଣ ଲୋକଙ୍କ କଥା କଣ କହିବା ? ୧୩୦ ।

ସତ୍ୟଂ ଶୌର୍ଯ୍ୟଂ ଦୟା ତ୍ୟାଗୋ ନୃପସ୍ୟୈତେ ମହାଗୁଣାଃ ।
ଏତୈସ୍ତ୍ୟକ୍ତୋ ମହୀପାଳଃ ପ୍ରାପ୍ନୋତି ଖଲୁ ବାଚ୍ୟତା । ୧୩୧ ।

ସତ୍ୟ, ବୀରତ୍ୱ, ଦୟା, ତ୍ୟାଗ—ଏଗୁଡ଼ିକ ହେଉଛି ରାଜା-ଙ୍କର ମହାନ୍ ଗୁଣ । ଯେଉଁ ରାଜାଙ୍କଠାରେ ଏଗୁଡ଼ିକ ନ ଥାଏ, ସେ ଲୋକସମାଜରେ ନିନ୍ଦାର ପାତ୍ର ହୁଅନ୍ତି । ୧୩୧ ।

ଏପରି ସମୟ ଉପସ୍ଥିତ ହେଲେ ପ୍ରଥମେ ନିଶ୍ଚୟ ଅମାତ୍ୟ-ମାନଙ୍କୁ ପୁରସ୍କୃତ କରିବା ଉଚିତ । ଆହୁରି ମଧ୍ୟ କଥିତ ଅଛି—

ଯୋ ଯେନ ପ୍ରତିବଦ୍ଧଃ ସ୍ୟାତ୍ ସହ ତେନୋଦୟୀ ବ୍ୟୟୀ ।
ସ ବିଶ୍ୱସ୍ତୋ ନିୟୋକ୍ତବ୍ୟଃ ପ୍ରାଣେଷୁ ଚ ଧନେଷୁ ଚ । ୧୩୨ ।

ଯେଉଁ ବ୍ୟକ୍ତି ରାଜାଙ୍କ ସହିତ ସମ୍ବନ୍ଧାନ୍ୱିତ ହୋଇ ତାଙ୍କର ଉନ୍ନତିରେ ନିଜକୁ ଉନ୍ନତିପ୍ରାପ୍ତ ଓ ଅବନତିରେ ନିଜକୁ ଅବନତିପ୍ରାପ୍ତ ବୋଲି ମନେ କରେ, ସେହି ବିଶ୍ୱସ୍ତ ବ୍ୟକ୍ତିକୁ ପ୍ରାଣରକ୍ଷା ତଥା ଧନରକ୍ଷା କାର୍ଯ୍ୟରେ ନିଯୁକ୍ତ କରିବା ଉଚିତ ।୧୩୨। ଯେହେତୁ—

ଧୂର୍ତ୍ତଃ ସ୍ତ୍ରୀ ବା ଶିଶୁର୍ଯସ୍ୟ ମନ୍ତ୍ରିଣଃ ସ୍ୟୁର୍ମହୀପତେଃ ।
ଅମାତ୍ୟପବନକ୍ଷିପ୍ତୋଽକାର୍ଯ୍ୟାବ୍ଧୌ ସ ନିମଜ୍ଜତି । ୧୩୩ ।

ଯେଉଁ ରାଜାଙ୍କର ମନ୍ତ୍ରୀ ପ୍ରତାରକ, ନାରୀ ବା ବାଳକ ହୋଇଥାନ୍ତି, ସେ ରାଜ୍ୟ ଅମାତ୍ୟରୂପକ ବାତ୍ୟାରେ ଅକାର୍ଯ୍ୟରୂପକ ସମୁଦ୍ରରେ ପଡ଼ି ସେଥିରେ ନିମଗ୍ନ ହୁଏ । ୧୩୩ । ଆହୁରି ଶୁଣନ୍ତୁ—

ହର୍ଷକ୍ରୋଧୌ ଯତୌ ଯସ୍ୟ ଶାସ୍ତ୍ରାର୍ଥେ ପ୍ରତ୍ୟୟସ୍ତଥା ।
ନିତ୍ୟଂ ଭୃତ୍ୟାନୁପେକ୍ଷା ଚ ତସ୍ୟ ସ୍ୟାଦ୍ଧନଦା ଧରା । ୧୩୪ ।

ଯେଉଁ ରାଜା ହର୍ଷରେ ତଥା କ୍ରୋଧରେ ସଂଯତ, ଯାହାଙ୍କର ଶାସ୍ତ୍ର ବଚନରେ ବିଶ୍ୱାସ ଥାଏ, ଯିଏ ପ୍ରତ୍ୟହ ଭୃତ୍ୟମାନଙ୍କ ଦୁଃଖ-ସୁଖ ବିଷୟରେ ଦୃଷ୍ଟି ଦେଇଥାନ୍ତି, ସେହି ରାଜାଙ୍କର ରାଜ୍ୟ ଧନ ଦାନ କରିଥାଏ । ୧୩୪ ।

ଯେଷାଂ ରାଜ୍ଞା ସହ ସ୍ୟାତାମୁଚ୍ଚୟାପଚୟୌ ଧ୍ରୁବମ୍
'ଅମାତ୍ୟା' ଇତି ତାନ୍ ରାଜା ନାଽବମନ୍ୟେତ୍ କଦାଚନ । ୧୩୫

ରାଜାଙ୍କର ଉନ୍ନତି ଓ ଅବନତି ସଙ୍ଗେ ସେବକମାନଙ୍କର ଉନ୍ନତି ବା ଅବନତି ହୋଇଥାଏ, ରାଜା ସେମାନଙ୍କୁ ଅମାତ୍ୟ ବୋଲି ଜାଣି କେବେ ଅବଜ୍ଞା କରିବା ଉଚିତ ନୁହେଁ । ୧୩୫ ।

ମହୀଭୁଜୋ ମଦାନ୍ଧସ୍ୟ ସଙ୍କୀର୍ଣ୍ଣସ୍ୟେବ ଦନ୍ତିନଃ ।
ସ୍ଖଳତୋ ହି କରାଲମ୍ବଃ ସୁଶିଷ୍ଟୈରପି ଦୀୟତେ । ୧୩୬ ।

ମଦମତ୍ତ, ସଙ୍କୀର୍ଣ୍ଣ ହସ୍ତୀ ପଙ୍କାଦରେ ଖସି ପଡ଼ିଲେ ସୁଶିକ୍ଷିତ ହସ୍ତୀମାନେ ତାକୁ କର (ଶୁଣ୍ଢ) ରେ ସାହାଯ୍ୟ ଦେଲାପରି ରାଜ୍ୟ-ମଦରେ ଉନ୍ମତ୍ତ, ସଙ୍କୀର୍ଣ୍ଣହୃଦୟ ରାଜା ବିପଦରେ ପଡ଼ିଲେ ଶିଷ୍ଟ ଅମାତ୍ୟମାନେ ତାଙ୍କୁ ନିଜର (କର) ହାତ ବଢ଼ାଇ ଦେଇ ସାହାଯ୍ୟ କରନ୍ତି । ୧୩୬ ।

ଏଥି ମଧ୍ୟରେ ମେଘବର୍ଣ୍ଣ କାକ (ଶିବବର୍ଣ୍ଣଙ୍କ କପଟଦୂତ) ଉପସ୍ଥିତ ହୋଇ ରାଜାଙ୍କୁ ପ୍ରଣାମ କରି କହିଲା, "ମହାରାଜ, ମୋ ଆଡ଼େ କୃପା ଦୃଷ୍ଟି ପକାନ୍ତୁ । ବର୍ତ୍ତମାନ ଶତ୍ରୁ ଦୁର୍ଗଦ୍ୱାରରେ ଉପସ୍ଥିତ । ଆପଣଙ୍କର ଆଦେଶ ମିଳିଲେ ଦୁର୍ଗ ବାହାରକୁ ଯାଇ ମୋର ପରାକ୍ରମ ଦେଖାଇବି । ତାହାଦ୍ୱାରା ଆପଣଙ୍କ ଋଣରୁ ମଧ୍ୟ ମୁକ୍ତ ହେବି ।"

ଚକ୍ରବାକ କହିଲା, "ନା, ନା, ତାହା ହେବ ନାହିଁ । ଯଦି ଦୁର୍ଗ ବାହାରକୁ ଯାଇ ଯୁଦ୍ଧ କରିବା, ତେବେ ଦୁର୍ଗ ଭିତରେ ଆଶ୍ରୟ ନେବାର କି ପ୍ରୟୋଜନ ଥିଲା । ପୁଣି—

ଦୃଢମୋଽପି ଯଥା ନକ୍ରଃ ସଲିଲାନ୍ନିର୍ଗତୋ ବଶଃ
ବନାଦ୍ ବିନିର୍ଗତଃ ଶୂରଃ ସିଂହୋଽପି ସ୍ୟାଚ୍ଛୃଗାଳବତ୍ । ୧୩୭ ।

ଯେପରି ଭୟଙ୍କର ହେଲେହେଁ କୁମ୍ଭୀର ଜଳରୁ ବାହାର ଆସିଲେ ବଶ ହୁଏ । ସେହିପରି ପରାକ୍ରାନ୍ତ ସିଂହ ବନରୁ ବାହାର ଆସିଲେ ଶୃଗାଳ ପରି ଅନ୍ୟର ବଶ ହୁଏ ।''

ବାୟସ ମେଘବର୍ଣ୍ଣ କହିଲା, ''ମହାରାଜ, ଆପଣ ନିଜେ ଯାଇ ଯୁଦ୍ଧ ଦେଖିବା ହେଉନ୍ତୁ । କାରଣ—

ପୁରସ୍କୃତ୍ୟ ବଳଂ ରାଜା ଯୋଧୟେଦବଲୋକୟନ୍ ।
ସ୍ୱାମିନାଽଧିଷ୍ଠିତଃ ଶ୍ୱାଽପି କିଂ ନ ସିଂହାୟତେ ଧ୍ରୁବମ୍ । ୧୩୮ ।

ରାଜା ସେନାକୁ ଆଗରେ ରଖି ତାହାକୁ ଚାହିଁ ଯୁଦ୍ଧ କରାଇବା ଉଚିତ । ପ୍ରଭୁଙ୍କ ସହିତ ରହିଥିଲେ କୁକୁର ମଧ୍ୟ ନିଶ୍ଚୟ ସିଂହପରି ପରାକ୍ରମ ପ୍ରକାଶ କରିବ ।'' ୧୩୮ ।

ଏହାପରେ ସେମାନେ ସମସ୍ତେ ଦୁର୍ଗଦ୍ୱାର ନିକଟକୁ ଯାଇ ଭୀଷଣ ଯୁଦ୍ଧ କଲେ । ଅନ୍ୟ ଏକ ଦିନରେ ରାଜା ଚିତ୍ରବର୍ଣ୍ଣ ଗୃଧ୍ରକୁ କହିଲେ, ''ପିତଃ ! ଏବେ ତୁମର ପ୍ରତିଜ୍ଞା ପାଳନ କର ।''

ଗୃଧ୍ର କହିଲା, ''ମହାରାଜ, ଶୁଣନ୍ତୁ—

ଅକାଳସହମତ୍ୟଳ୍ପଂ ମୂର୍ଖବ୍ୟସନନାୟକମ୍ ।
ଅଗୁପ୍ତଂ ଭୀରୁଯୋଧଂ ଚ ଦୁର୍ଗବ୍ୟସନମୁଚ୍ୟତେ । ୧୩୯ ।

ବହୁକାଳ ଅବରୋଧ ସହ୍ୟ କରିବାରେ ଅକ୍ଷମତା, ମୂର୍ଖ ଓ ବ୍ୟସନୀ ନେତାଙ୍କର ପରିଚାଳନା, ଅରକ୍ଷିତ ଅବସ୍ଥା, ଭୟାଳୁ ସୈନ୍ୟ—ଏଗୁଡ଼ିକ ହେଉଛି ଦୁର୍ଗର ବିପଦ (ଦୋଷ) । ୧୩୯ ।
ଏସବୁ ଦୋଷ ଏଠାରେ ନାହିଁ ।

ଉପଜାପଶ୍ଚିରାଽରୋଧୋଽବସ୍କନ୍ଦସ୍ତୀବ୍ର ପୌରୁଷମ୍ ।
ଦୁର୍ଗସ୍ୟ ଲଙ୍ଘନୋପାୟାଶ୍ଚତ୍ୱାରଃ କଥିତା ଇମେ । ୧୪୦ ।

ଦୁର୍ଗ ଭିତରେ ଥିବା ସୈନ୍ୟମାନଙ୍କ ମଧ୍ୟରେ ଭେଦ ସୃଷ୍ଟି କରିବା, ବହୁକାଳ ବ୍ୟାପୀ ଅବରୋଧ, ସହସା ଆକ୍ରମଣ ଓ ଅତି ପରାକ୍ରମ--ଏହି ଚାରୋଟି ଦୁର୍ଗ ଜୟର ଉପାୟରୂପେ କଥିତ । ୧୪୦।

ବର୍ତ୍ତମାନ ଏଠାରେ ଯଥାଶକ୍ତି ଯତ୍ନ କରିବାକୁ ହେବ । (କାନ ପାଖରେ ମୁହଁ ଦେଇ ଭୁମି ଭୁମି କରି—ଏଇଆ, ଏଇଆ) । ତତ୍ପରେ ସୂର୍ଯ୍ୟୋଦୟ ହେବା ପୂର୍ବରୁ ଦୁର୍ଗର ଚାରି ଦ୍ୱାରରେ ଯୁଦ୍ଧ ଚାଲିଥିଲା-ବେଳେ ଦୁର୍ଗମଧ୍ୟସ୍ଥିତ ଗୃହମାନଙ୍କ ଉପରେ କାକମାନେ ଏକସମୟରେ ଅଗ୍ନିନିକ୍ଷେପ କଲେ । 'ଦୁର୍ଗ ଅଧିକାର କଲୁ' 'ଦୁର୍ଗ ଅଧିକାର କଲୁ' ଏହି କୋଳାହଳ ଶୁଣି ଓ ସବୁଆଡ଼େ ଅଗ୍ନିଶିଖା ଦେଖି ରାଜହଂସଙ୍କ ସୈନିକମାନେ ଓ ବହୁସଂଖ୍ୟକ ଦୁର୍ଗବାସୀ ହ୍ରଦରେ ପ୍ରବେଶ କଲେ । ଯେହେତୁ—

ସୁମନ୍ତ୍ରିତଂ ସୁବିକ୍ରାନ୍ତଂ ସୁଯୁଦ୍ଧଂ ସୁପଳାୟିତମ୍ ।
କାର୍ଯ୍ୟକାଳେ ଯଥାଶକ୍ତି କୁର୍ଯ୍ୟାନ୍ନତୁ ବିଚାରୟେତ୍ । ୧୪୧ ।

କାର୍ଯ୍ୟକାଳରେ ଉତ୍ତମ ମନ୍ତ୍ରଣା, ଉତ୍ତମ ପରାକ୍ରମ, ଉତ୍ତମ ଯୁଦ୍ଧ ଓ ଉତ୍ତମ ପଳାୟନ ପ୍ରଭୃତି ଯଥାଶକ୍ତି ଶୀଘ୍ର କରିବା ଉଚିତ । ଏଥିରେ କୌଣସି ପ୍ରକାର ବିଚାର କରିବା ଉଚିତ ନୁହେଁ । ୧୪୧ ।

ରାଜହଂସର ଗତି ସ୍ୱଭାବତଃ ମନ୍ଥର । ସେ ସାରସ ସହିତ ଯାଉଥିବା ସମୟରେ ଚିତ୍ରବର୍ଣ୍ଣର ସେନାପତି କୁକ୍କୁଟ ଆସି ସେ ଦୁହିଁଙ୍କୁ ବେଷ୍ଟନ କଲା । ହିରଣ୍ୟଗର୍ଭ ସାରସକୁ କହିଲା, "ସେନାପତେ ସାରସ, ମୋତେ ଅପେକ୍ଷା କରି ତୁମେ କାହିଁକି ପ୍ରାଣ ହରାଇବ ? ମୁଁ ଏବେ ଯିବାକୁ ଅକ୍ଷମ । ତୁମେ ବର୍ତ୍ତମାନ ମଧ୍ୟ ଯିବାକୁ ସମର୍ଥ । ତେଣୁ ତୁମେ ଚାଲିଯାଇ ଜଳରେ ପ୍ରବେଶ କରି ନିଜକୁ ରକ୍ଷା

କର । ମୋର ପୁତ୍ର ଚୂଡ଼ାମଣିକୁ ସର୍ବଜ୍ଞଙ୍କ ସମ୍ମତି ନେଇ ରାଜା କରିବ ।'' ସାରସ କହିଲା, "ରାଜନ୍, ଆପଣ ଏପରି ଅସହ୍ୟ କଥା କହନ୍ତୁ ନାହିଁ । ଯେତେଦିନ ଯାଏ ଚନ୍ଦ୍ରସୂର୍ଯ୍ୟ ଥିବେ, ସେତେଦିନ ପର୍ଯ୍ୟନ୍ତ ଆପଣ ବିଜୟୀ ହେବେ । ରାଜନ୍, ମୁଁ ହେଉଛି ଦୁର୍ଗାଧିକାରୀ । ତେଣୁ ଶତ୍ରୁ ଆସିଲେ ମୋର ମାଂସରକ୍ତବିଲିପ୍ତ ଦ୍ୱାରବାଟେ ଆସନ୍ତୁ । ପ୍ରଭୁ !

'ଦାତା, କ୍ଷମୀ, ଗୁଣଗ୍ରାହୀ ସ୍ୱାମୀ ଦୁଃଖେନ ଲଭ୍ୟତେ ।'

ଆପଣଙ୍କ ଭଳି ଦାତା, କ୍ଷମାବାନ୍ ଓ ଗୁଣଗ୍ରାହୀ ପ୍ରଭୁ ବହୁକଷ୍ଟରେ ମିଳିଥାନ୍ତି ।''

ରାଜା କହିଲେ—

ଶୁଚିର୍ଦକ୍ଷୋଽନୁରକ୍ତଶ୍ଚ ଜାନେ ଭୃତ୍ୟୋଽପି ଦୁର୍ଲଭଃ । ୧୪୨ ।

"ସେ କଥା ସତ୍ୟ, କିନ୍ତୁ ମୁଁ ମନେ କରେଁ, ପବିତ୍ର, ଚତୁର ଏବଂ ପ୍ରଭୁଭକ୍ତ ଭୃତ୍ୟ ମଧ୍ୟ ଦୁର୍ଲଭ ।'' ୧୪୨ ।

ସାରସ କହିଲା, "ପ୍ରଭୁ, ଶୁଣନ୍ତୁ—

ଯଦି ସମରମପାସ୍ୟ ନାସ୍ତି ମୃତ୍ୟୋ-
ର୍ଭୟମିତି ଯୁକ୍ତମିତୋଽନ୍ୟତଃ ପ୍ରୟାତୁମ୍
ଅଥ ମରଣମବଶ୍ୟମେବ ଜନ୍ତୋଃ
କମିତି ମୁଧା ମଳିନଂ ଯଶଃ କ୍ରିୟେତ ? ୧୪୩ ।

ଯଦି ଯୁଦ୍ଧ ତ୍ୟାଗ କରି ପଳାଇବା ଦ୍ୱାରା ମୃତ୍ୟୁଭୟ ଦୂର ହୋଇ ପାରନ୍ତା, ତେବେ ଏଠାରୁ ଅନ୍ୟ ସ୍ଥାନକୁ ପଳାଇ ଯିବା ଉଚିତ ହୁଅନ୍ତା । କିନ୍ତୁ ପ୍ରାଣୀର ମରଣ ଅବଶ୍ୟମ୍ଭାବୀ; ତେବେ

ପଳାଇ ଯାଇ ଶୁଭ୍ର ଯଶକୁ ବୃଥା କାହିଁକି ମଳିନ କରିବ ? ୧୪୩ ।
ପୁଣି—

ଭବେଽସ୍ମିନ୍ ପବନୋଦ୍ଭ୍ରାନ୍ତବୀଚିବିଭ୍ରମଭଙ୍ଗୁରେ ।
ଜାୟତେ ପୁଣ୍ୟଯୋଗେନ ପରାର୍ଥେ ଜୀବିତବ୍ୟୟଃ । ୧୪୪ ।

ପବନ ଦ୍ୱାରା ଉତ୍ଥିତ ଲହରୀର କ୍ରୀଡ଼ାପରି କ୍ଷଣଭଙ୍ଗୁର ଏହି ସଂସାରରେ ବହୁ ପୁଣ୍ୟ ଯୋଗେ ପରର ଉପକାର ପାଇଁ ପ୍ରାଣ-ବିସର୍ଜନର ସୁଯୋଗ ମିଳିଥାଏ । ୧୪୪ ।

ସ୍ୱାମ୍ୟମାତ୍ୟଶ୍ଚ ରାଷ୍ଟ୍ରଂ ଚ ଦୁର୍ଗଂ କୋଶୋ ବଳଂ ସୁହୃତ୍ ।
ରାଜ୍ୟାଙ୍ଗାନି ପ୍ରକୃତୟଃ ପୌରାଣାଂ ଶ୍ରେଣୟୋଽପି ଚ । ୧୪୫ ।

ରାଜା, ମନ୍ତ୍ରୀ, ରାଷ୍ଟ୍ର, ଦୁର୍ଗ, ରାଜକୋଷ, ସେନା, ବନ୍ଧୁ ତଥା ପ୍ରଜା ଓ ନାଗରିକ ଶ୍ରେଣୀ ହେଉଛନ୍ତି ରାଜ୍ୟର ଅଷ୍ଟ ଅଙ୍ଗ । ୧୪୫ ।

ରାଜନ୍, ଆପଣ ହେଉଛନ୍ତି ରାଜ୍ୟର ସ୍ୱାମୀ; ତେଣୁ ସବୁ ଉପାୟରେ ଆପଣଙ୍କୁ ରକ୍ଷା କରିବା କର୍ତ୍ତବ୍ୟ । ଯେହେତୁ—

ପ୍ରକୃତିଃ ସ୍ୱାମିନଂ ତ୍ୟକ୍ତ୍ୱା ସମୃଦ୍ଧାଽପି ନ ଜୀବତି ।
ଅପି ଧନ୍ୱନ୍ତରିର୍ବୈଦ୍ୟଃ କିଂ କରୋତି ଗତାୟୁଷି । ୧୪୬ ।

ପ୍ରଜାକୁଳ ଯେତେ ସମୃଦ୍ଧିଶାଳୀ ହୋଇଥିଲେହେଁ ରାଜାଙ୍କ ବିନା ବଞ୍ଚି ପାରିବେ ନାହିଁ । ରୋଗୀର ଆୟୁ ଶେଷ ହୋଇଗଲେ ସ୍ୱୟଂ ଧନ୍ୱନ୍ତରି ବୈଦ୍ୟ ତାର କଅଣ କରି ପାରିବେ ? ୧୪୬ ।
ପୁଣି—

ନରେଶେ ଜୀବଲୋକୋଽୟଂ ନିମୀଳତି ନିମୀଳତି ।
ଉଦେତ୍ୟୁଦୀୟମାନେ ଚ ରବାବିବ ସରୋରୁହମ୍ । ୧୪୭ ।

ରାଜା ବିନଷ୍ଟ ହେଲେ ପ୍ରଜାବର୍ଗ ବିପନ୍ନ ହୁଅନ୍ତି; ସୂର୍ଯ୍ୟୋଦୟରେ ପଦ୍ମର ବିକାଶ ହେଲା ପରି ରାଜାଙ୍କର ଉନ୍ନତିରେ ପ୍ରଜାମାନଙ୍କର ମଧ୍ୟ ଉନ୍ନତି ହୁଏ । ୧୪୭ ।

ଏଠାରେ ମଧ୍ୟ ପ୍ରଧାନ ଅଙ୍ଗ ହେଉଛନ୍ତି ରାଜା ।''

ଏଥି ମଧ୍ୟରେ କୁକ୍କୁଟ ଆସି ତୀକ୍ଷ୍ଣ ନଖ ସାହାଯ୍ୟରେ ରାଜହଂସଙ୍କୁ ଆଘାତ କଲା । ତହୁଁ ସାରସ ଦଉଡ଼ି ଆସି ନିଜ ଶରୀର ଦ୍ୱାରା ତାଙ୍କୁ ଆବରଣ କରି ଜଳ ମଧ୍ୟକୁ ପକାଇ ଦେଲା ।

ଇତ୍ୟବସରରେ କୁକ୍କୁଟମାନଙ୍କ ପ୍ରହାରରେ ଜର୍ଜରିତ ହେଲେହେଁ ସାରସ ବହୁସଂଖ୍ୟକ କୁକ୍କୁଟ ସେନାଙ୍କୁ ବଧ କଲା । ଏହାପରେ ବହୁସଂଖ୍ୟାରେ ପକ୍ଷୀମାନେ ମିଳିତ ହୋଇ ସାରସକୁ ଚଞ୍ଚୁ ଦ୍ୱାରା ପ୍ରହାର କରିବାରୁ ସେ ପଞ୍ଚତ୍ୱ ପ୍ରାପ୍ତହେଲା । ଚିତ୍ରବର୍ଣ୍ଣ ଦୁର୍ଗ ମଧ୍ୟରେ ପ୍ରବେଶ କରି ଦୁର୍ଗର ସମସ୍ତ ଦ୍ରବ୍ୟ ଲୁଣ୍ଠନ କରାଇ ଭାଟମାନଙ୍କର ଜୟଧ୍ୱନି ଦ୍ୱାରା ଆନନ୍ଦିତ ହୋଇ ନିଜ ସେନାନିବାସକୁ ଫେରିଗଲା ।

ରାଜପୁତ୍ରମାନେ କହିଲେ, "ରାଜହଂସର ସେନାମଧ୍ୟରେ ସେହି ସାରସ ହିଁ ହେଉଛି ପୁଣ୍ୟବାନ୍, କାରଣ ସେ ସ୍ୱଶରୀର ଦାନ କରି ତାର ପ୍ରଭୁଙ୍କୁ ରକ୍ଷା କରିଥିଲା । ଯେହେତୁ—

ଜନୟନ୍ତି ସୁତାନ୍ ଗାବଃ ସର୍ବା ଏବ ଗବାକୃତୀନ୍ ।
ବିଷାଣୋଲ୍ଲିଖିତସ୍କନ୍ଧଂ କାଚିଦେବ ଗବାଂ ପତିମ୍ । ୧୪୮ ।

ସବୁ ଗାଈ ଗବାକୃତି ବାଛୁରିମାନଙ୍କୁ ଜନ୍ମ ଦେଇଥାନ୍ତି । କିନ୍ତୁ ଯୁଦ୍ଧରେ ଶୃଙ୍ଗଦ୍ୱାରା କ୍ଷତର ଚିହ୍ନ ଧାରଣ କରିଥିବା ସ୍କନ୍ଧବିଶିଷ୍ଟ ବୃଷଭକୁ କୌଣସି କୌଣସି ଗାଈ ଜନ୍ମ ଦେଇଥାନ୍ତି ।" ୧୪୮ ।

ବିଷ୍ଣୁଶର୍ମା କହିଲେ, "ସେହି ମହାପରାକ୍ରମୀ ସାରସ ଅକ୍ଷୟ ଲୋକର ଅଧିକାରୀ ହୋଇଅଛନ୍ତି । ସେଠାରେ ସେ ଅପ୍‌ସରାମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ମହାସୁଖ ଅନୁଭବ କରୁଥାନ୍ତି । କଥିତ ଅଛି—

ଆହବେଷୁ ଚ ଯେ ଶୂରାଃ ସ୍ୱାମ୍ୟର୍ଥେ ତ୍ୟକ୍ତଜୀବିତାଃ
ଭର୍ତ୍ତୃଭକ୍ତାଃ କୃତଜ୍ଞାଶ୍ଚ ତେ ନରାଃ ସ୍ୱର୍ଗଗାମିନଃ । ୧୪୯ ।

ଯୁଦ୍ଧ କ୍ଷେତ୍ରରେ ଯେଉଁ ବୀରମାନେ ପ୍ରଭୁଙ୍କ ନିମନ୍ତେ ପ୍ରାଣ-ତ୍ୟାଗ କରନ୍ତି, ସେହି ପ୍ରଭୁଭକ୍ତ ଓ କୃତଜ୍ଞ ଲୋକେ ସ୍ୱର୍ଗଲାଭ କରିଥାନ୍ତି । ୧୪୯ ।

ଯତ୍ର ତତ୍ର ହତଃ ଶୂରଃ ଶତ୍ରୁଭିଃ ପରିବେଷ୍ଟିତଃ ।
ଅକ୍ଷୟାଁଲ୍ଲଭତେ ଲୋକାନ୍ ଯଦି କ୍ଳୈବ୍ୟଂ ନ ଗଚ୍ଛତି । ୧୫୦ ।

ଶତ୍ରୁମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ ବୀର ଯେ କୌଣସି-ଠାରେ ନିହତ ହେଲେହେଁ ସେ ଯଦି କାତରତା ପ୍ରକାଶ କରି ନ ଥାଏ, ତେବେ ସେ ଅକ୍ଷୟ ସ୍ୱର୍ଗଲୋକ ପ୍ରାପ୍ତହୁଏ । ୧୫୦ ।

ତୁମେମାନେ ବିଗ୍ରହ ବିଷୟ ଶୁଣିଲ ।"

ରାଜପୁତ୍ରମାନେ କହିଲେ, "ଶୁଣି ଆମ୍ଭେମାନେ ଅତ୍ୟନ୍ତ ସୁଖୀ ହେଲୁ ।"

ବିଷ୍ଣୁଶର୍ମା କହିଲେ, "ତାହାଛଡ଼ା ଏହା ମଧ୍ୟ ହେଉ—

ବିଗ୍ରହଃ କରିତୁରଙ୍ଗପତ୍ତିଭି-
ର୍ନୋ କଦାଽପି ଭବତାନ୍ନୃପାଭୂଜାମ୍ ।
ନୀତିମନ୍ତ୍ରପବନୈଃ ସମାହତାଃ,
ସଂଶ୍ରୟନ୍ତୁ ଗିରିଗହ୍ୱରଂ ଦ୍ୱିଷଃ । ୧୫୧ ।

ରାଜାମାନଙ୍କର ହସ୍ତୀ-ଅଶ୍ୱ-ପଦାତି ସହିତ କଦାପି ଯୁଦ୍ଧ ନ ହେଉ । କିନ୍ତୁ ଶତ୍ରୁମାନେ ନୀତି ଓ ମନ୍ତ୍ରଣାରୂପକ ପବନଦ୍ୱାରା ଆଘାତପ୍ରାପ୍ତ ହୋଇ ପର୍ବତର ଗହ୍ୱରରେ ଆଶ୍ରୟ ନଅନ୍ତୁ । ୧୫୧ ।”

[ ହିତୋପଦେଶର ବିଗ୍ରହନାମକ ତୃତୀୟ ଭାଗ ସମାପ୍ତ ]

# ହିତୋପଦେଶ

( ଚତୁର୍ଥ ଭାଗ )

## ସନ୍ଧି

ପୁନରାୟ କଥାରମ୍ଭ ସମୟରେ ରାଜପୁତ୍ରମାନେ କହିଲେ, "ଆର୍ଯ୍ୟ, ଆମେମାନେ ବିଗ୍ରହ ଶୁଣିଅଛୁ । ବର୍ତ୍ତମାନ ସନ୍ଧି ବିଷୟ କହନ୍ତୁ ।" ବିଷ୍ଣୁଶର୍ମା କହିଲେ—ସନ୍ଧି ବିଷୟ କହୁଛୁ, ତୁମେମାନେ ଶୁଣ । ଏହାର ପ୍ରଥମ ଶ୍ଳୋକ ହେଉଛି—

ବୃତ୍ତେ ମହତି ସଂଗ୍ରାମେ ରାଜ୍ଞୋର୍ନିହତସେନୟୋଃ ।
ସ୍ଥେୟାଭ୍ୟାଂ ଗୃଧ୍ର-ଚକ୍ରାଭ୍ୟାଂ ବାଚ୍ଚ ସନ୍ଧିଃ କୃତଃ କ୍ଷଣାତ୍ । ୧ ।

ଏହି ଦୁଇ ରାଜାଙ୍କ ( ରାଜହଂସ ଓ ଚିତ୍ରବର୍ଣ୍ଣ ) ମଧ୍ୟରେ ଘୋର ସଂଗ୍ରାମ ହେବା ଓ ଉଭୟ ପକ୍ଷର ସେନାମଧ୍ୟରୁ ଅନେକେ ନିହତ ହେବା ପରେ ଦୁଇପକ୍ଷର ପ୍ରଧାନମନ୍ତ୍ରୀ ଚକ୍ରବାକ ଓ ଗୃଧ୍ର ଭିତରେ କ୍ଷଣକାଳ ମଧ୍ୟରେ ଗୋଟିଏ ମୌଖିକ ସନ୍ଧି ହୋଇଗଲା । ୧ ।

ରାଜପୁତ୍ରମାନେ କହିଲେ, "ଏହା କପରି ହେଲା ?" ବିଷ୍ଣୁଶର୍ମା କହିବାକୁ ଲାଗିଲେ—

ରାଜହଂସ ପଚାରିଲା, "ଆମ ଦୁର୍ଗ ଉପରେ କିଏ ଅଗ୍ନି ପକାଇଲା ? ଶତ୍ରୁପକ୍ଷ ପକାଇଲେ, କି ଆମ ଦୁର୍ଗଭିତରେ ବାସ କରୁଥିବା କେହି ଶତ୍ରୁଦ୍ୱାରା ନିଯୁକ୍ତ ହୋଇ ଏହା କଲା ?"

ଚକ୍ରବାକ କହିଲା, "ମହାରାଜ, ଆପଣଙ୍କର ସେହି ନିଃସ୍ୱାର୍ଥପର ବନ୍ଧୁ ମେଘବର୍ଣ୍ଣ ଓ ତାର ପରିବାର ଦେଖାଯାଉ ନାହାନ୍ତି । ତେଣୁ ମୋର ମନେହୁଏ, ଏ ଦୁଷ୍କର୍ମ ସେ ହିଁ କରିଛି ।"

ରାଜା କିଛିକ୍ଷଣ ଚିନ୍ତା କରି କହିଲେ, "ହିଁ, ତାହା ହୋଇ-ପାରେ । ଏ ହେଉଛି ମୋର ଦୁର୍ଭାଗ୍ୟ । କଥିତ ଅଛି—

ଅପରାଧଃ ସ ଦୈବସ୍ୟ ନ ପୁନର୍ମନ୍ତ୍ରିଣାମୟମ୍ ।
କାର୍ଯ୍ୟଂ ସୁଚରିତଂ କ୍ୱାପି ଦୈବଯୋଗାଦ୍ ବିନଶ୍ୟତି । ୨ ।

ଯାହା କିଛି ଘଟିଗଲା ତାହା ଦୁର୍ଭାଗ୍ୟ ଦୋଷରୁ ହିଁ ହେଲା; ଏଥିରେ ମନ୍ତ୍ରୀମାନଙ୍କର ଦୋଷ ନାହିଁ । ସମୟେ ସମୟେ ସୁସମ୍ପାଦିତ କାର୍ଯ୍ୟ ମଧ୍ୟ ଦୈବବଶରୁ ବିନଷ୍ଟ ହୋଇଥାଏ ।" ୨ ।

ମନ୍ତ୍ରୀ ଚକ୍ରବାକ କହିଲା, "ଏ କଥା ମଧ୍ୟ କଥିତ ଅଛି—

ବିଷମାଂ ହି ଦଶାଂ ପ୍ରାପ୍ୟ ଦୈବଂ ଗର୍ହୟତେ ନରଃ ।
ଆତ୍ମନଃ କର୍ମଦୋଷାଂଶ୍ଚ ନୈବ ଜାନାତ୍ୟପଣ୍ଡିତଃ । ୩ ।

ମନୁଷ୍ୟ ବିପଦରେ ପଡ଼ିଲେ ଦୈବକୁ ନିନ୍ଦା କରେ । ମୂର୍ଖ ଲୋକ ନିଜର କୃତକର୍ମର ଦୋଷ ଜାଣିପାରେ ନାହିଁ । ୩ । ଏହା-ଛଡ଼ା—

ସୁହୃଦାଂ ହିତକାମାନାଂ ଯୋ ବାକ୍ୟଂ ନାଽଭିନନ୍ଦତି ।
ସ କୂର୍ମ ଇବ ଦୁର୍ବୁଦ୍ଧିଃ କାଷ୍ଠାଦ୍ଭ୍ରଷ୍ଟୋ ବିନଶ୍ୟତି । ୪ ।

ଯେଉଁ ଲୋକ ହିତାକାଙ୍କ୍ଷୀ ବନ୍ଧୁମାନଙ୍କର କଥାକୁ ଆଦରରେ ଗ୍ରହଣ ନ କରେ, ସେହି ମୂର୍ଖ କଚ୍ଛପ କାଷ୍ଠ ଖଣ୍ଡରୁ ପଡ଼ି ବିନଷ୍ଟ ହେଲାପରି ବିନାଶପ୍ରାପ୍ତ ହୁଏ । ୪ । ପୁଣି—

ରକ୍ଷିତବ୍ୟଂ ସଦା ବାକ୍ୟଂ ବାକ୍ୟାଦ୍ ଭବତି ନାଶନମ୍ ।
ହଂସାଭ୍ୟାଂ ନୀୟମାନସ୍ୟ କୂର୍ମସ୍ୟ ପତନଂ ଯଥା । ୫ ।

ସର୍ବଦା ନିଜର କଥାରେ ସଂଯତ ରହିବା ଉଚିତ । କେବେ କେବେ କଥା କହି ବିନାଶ ଘଟିଥାଏ । ତାହା ନ କଲେ ହଂସଦ୍ୱୟଦ୍ୱାରା ନିଆ ଯାଉଥିବା କଚ୍ଛପ ତଳେ ପଡ଼ି ବିନଷ୍ଟ ହେଲାପରି ବିନଷ୍ଟ ହେବାକୁ ପଡ଼ିବ ।'' ୫ ।

(ରାଜହଂସ) ରାଜା ପଚାରିଲେ, "ସେ କଥା କଅଣ ?"

(ଚକ୍ରବାକ) ମନ୍ତ୍ରୀ କହିଲେ—

## କଥା-୧

ମଗଧ ଦେଶରେ ଫୁଲ୍ଲୋତ୍ପଳ ନାମକ ଗୋଟିଏ ପୁଷ୍କରିଣୀ ଅଛି । ସେଠାରେ ସଙ୍କଟ ଓ ବିକଟ ନାମରେ ଦୁଇଟି ହଂସ ବହୁକାଳରୁ ବାସ କରୁଥିଲେ । ସେ ଦୁହିଙ୍କର ମିତ୍ର କମ୍ବୁଗ୍ରୀବ ନାମକ ଏକ କଚ୍ଛପ ମଧ୍ୟ ସେଠାରେ ରହୁଥିଲା ।

ଏକଦା ଧୀବରମାନେ ସେଠାକୁ ଆସି କଥାବାର୍ତ୍ତା ହେଲେ— ଆଜ ଆମେମାନେ ଏଠାରେ ରହି କାଲି ସକାଳେ ପୁଷ୍କରିଣୀର ମତ୍ସ୍ୟକଚ୍ଛପ ପ୍ରଭୃତିଙ୍କୁ ମାରିବା । ଏହା ଶୁଣି କୂର୍ମ ହଂସଦୁହିଙ୍କୁ କହିଲା—'ବନ୍ଧୁ, ମୁଁ ଧୀବରମାନଙ୍କ ଏହି କଥାବାର୍ତ୍ତା ଶୁଣିଛି । ବର୍ତ୍ତମାନ ମୁଁ କଅଣ କରିବି ?' ସେ ଦୁହେଁ କହିଲେ, 'ବର୍ତ୍ତମାନ ବିଚାର କରିବା; କାଲି ସକାଳେ ଯାହା ଉଚିତ ହେବ, ତାହା କରିବା ।' କୂର୍ମ କହିଲା, "ସେପରି କଲେ ଚଳିବ ନାହିଁ, କାରଣ ବିପଦ ଉପସ୍ଥିତ ହେଲେ କି କ୍ଷତି ହେବ ତାହା ମୁଁ ଦେଖି ପାରୁଛି । ଏହା ମଧ୍ୟ କଥିତ ଅଛି—

ଅନାଗତବିଧାତା ଚ ପ୍ରତ୍ୟୁତ୍ପନ୍ନମତିସ୍ତଥା ।
ଦ୍ୱାବେତୌ ସୁଖମେଧେତେ ଯଦ୍‌ଭବିଷ୍ୟୋ ବିନଶ୍ୟତି । ୭ ।

ଯିଏ ଭବିଷ୍ୟତ ଚିନ୍ତାକରି ପ୍ରତିକାର ବ୍ୟବସ୍ଥା କରିଥାଏ ଓ ଯିଏ ବିପଦ ଉପସ୍ଥିତ ହେବାମାତ୍ରେ ତତ୍‌କ୍ଷଣାତ୍ ନିଜର ବୁଦ୍ଧିଦ୍ୱାରା ସେଥିରୁ ନିଜକୁ ମୁକ୍ତ କରିପାରେ; ଏ ଦୁହେଁ ସୁଖରେ ବଞ୍ଚିଥାନ୍ତି; କିନ୍ତୁ ଯିଏ 'ଯାହା ହେବାର ହେବ' ଏହିପରି ମନେକରେ, ସେ ବିନଷ୍ଟ ହୁଏ ।

ହଂସଦୁହେଁ କହିଲେ, "ତାହା କିପରି ?"

କୂର୍ମ କହିଲା—

## କଥା-୨

ପୂର୍ବେ ଏହି ( ଫୁଲ୍ଲୋତ୍ପଳ ) ପୁଷ୍କରିଣୀରେ ଧୀବରମାନେ ଉପସ୍ଥିତ ହୋଇ ଏହିପରି ମତ୍ସ୍ୟକୂର୍ମ ପ୍ରଭୃତିଙ୍କୁ ଧରିବାକୁ ଆସନ୍ତେ ତିନୋଟି ମତ୍ସ୍ୟ ପରସ୍ପର ମଧ୍ୟରେ ବିଚାର କଲେ । ସେମାନଙ୍କ ଭିତରେ ଅନାଗତବିଧାତା ନାବାଳ ଗୋଟିଏ ମତ୍ସ୍ୟ ଥିଲା । ସେ କହିଲା, "ମୁଁ ଯାଉଛି; ଅନ୍ୟ ଗୋଟିଏ ଜଳାଶୟକୁ ଚାଲିଯିବି ।" ଏହା କହି ସେ ଅନ୍ୟ ଗୋଟିଏ ପୁଷ୍କରିଣୀକୁ ଚାଲିଗଲା । ତତ୍ପରେ ପ୍ରତ୍ୟୁତ୍ପନ୍ନମତି ବୋଲି ଆଉ ଗୋଟିଏ ମତ୍ସ୍ୟ କହିଲା, "ଭବିଷ୍ୟତ ବିଷୟରେ ପ୍ରମାଣର ଅଭାବ, ତେଣୁ ମୁଁ କୁଆଡ଼େ ଯିବି ? ବିପଦ ଉପସ୍ଥିତ ହେଲେ ଯାହା କର୍ତ୍ତବ୍ୟ, ତାହା କରିବି । କଥିତ ଅଛି—

ଉତ୍ପନ୍ନାମାପଦଂ ଯସ୍ତୁ ସମାଧତ୍ତେ ସ ବୁଦ୍ଧିମାନ୍ ।
ବଣିଜୋ ଭାର୍ଯ୍ୟୟା ଜାରଃ ପ୍ରତ୍ୟକ୍ଷେ ନିହ୍ନୁତୋ ଯଥା । ୮ ।

ବଣିକର ସ୍ତ୍ରୀ ନିଜ ସ୍ୱାମୀଙ୍କ ଆଖି ଆଗରେ ମଧ୍ୟ ତାର ଜାର ପୁରୁଷକୁ ଲୁଚାଇ ଦେଇ ପାରିଲା ଭଳି ଯିଏ ଉପସ୍ଥିତ ବିପଦକୁ ତତ୍‌କ୍ଷଣାତ୍ ସମାଧାନ କରିପାରେ ସେ ହେଉଛି ବୁଦ୍ଧିମାନ୍ । ୭ ।

ମନ୍ଦଭବିଷ୍ୟ (ଭବିଷ୍ୟ ମତ୍ସ୍ୟ) ପଚାରିଲା, "ସେ କିପରି ?"

ପ୍ରତ୍ୟୁତ୍ପନ୍ନମତି କହିଲା—

## କଥା-୩

ପୂର୍ବକାଳରେ ସମୁଦ୍ରଦତ୍ତ ନାମରେ ଜଣେ ବଣିକ ଥିଲା । ତାର ସ୍ତ୍ରୀର ନାମ ରତ୍ନପ୍ରଭା । ସେ ସର୍ବଦା ନିଜର ଭୃତ୍ୟ ସହିତ ବିହାର କରୁଥିଲା । କାରଣ—

ନ ସ୍ତ୍ରୀଣାମପ୍ରିୟଃ କଶ୍ଚିତ୍, ପ୍ରିୟୋ ବାଽପି ନ ବିଦ୍ୟତେ ।
ଗାବସ୍ତୃଣମିବାଽରଣ୍ୟେ ପ୍ରାର୍ଥୟନ୍ତେ ନବଂ ନବମ୍ । ୮ ।

ସ୍ତ୍ରୀମାନଙ୍କ ପକ୍ଷରେ କେହି ଅପ୍ରିୟ ନୁହନ୍ତି । ଗାଈମାନେ ଅରଣ୍ୟରେ ନୂଆ ନୂଆ ଘାସ ଚରିଲାପରି ସ୍ତ୍ରୀମାନେ ନିତ୍ୟ ନୂତନ ପୁରୁଷ କାମନା କରିଥାନ୍ତି । ୮ ।

ଏକଦା ରତ୍ନପ୍ରଭା ନିଜର ଭୃତ୍ୟକୁ ଚୁମ୍ବନ ଦେଉଥିବା ସମୟରେ ସମୁଦ୍ରଦତ୍ତ ତାହା ଦେଖି ପାରିଲେ । ତହୁଁ ସେ ବ୍ୟଭିଚାରିଣୀ ତତ୍‌କ୍ଷଣାତ୍ ସ୍ୱାମୀନିକଟକୁ ଯାଇ କହିଲା, "ନାଥ, ଏ ଭୃତ୍ୟ ନିତାନ୍ତ ଦୁଷ୍ଟ । ସେ କର୍ପୂର ଚୋରିକରି ଖାଉଛି । ଏ କଥା ମୁଁ ତାର ମୁଖ ଆଘ୍ରାଣ କରି ଜାଣିଲି । କଥିତ ଅଛି—

ଆହାରୋ ଦ୍ୱିଗୁଣଃ ସ୍ତ୍ରୀଣାଂ ବୁଦ୍ଧିସ୍ତାସାଂ ଚତୁର୍ଗୁଣା
ଷଡ଼୍‌ଗୁଣୋବ୍ୟବସାୟଶ୍ଚ କାମଶ୍ଚାଷ୍ଟଗୁଣଃ ସ୍ମୃତଃ । ୯ ।

ପୁରୁଷଙ୍କ ଅପେକ୍ଷା ସ୍ତ୍ରୀମାନଙ୍କର ଆହାର ଦୁଇ ଗୁଣ, ବୁଦ୍ଧି ଚାରି ଗୁଣ, ପରିଶ୍ରମ କରିବାର ଶକ୍ତି ଛଅ ଗୁଣ ଓ କାମ ପ୍ରବୃତ୍ତି ଆଠ ଗୁଣ ଅଟେ । ୯ ।

ତାହା ଶୁଣି ଭୃତ୍ୟ କ୍ରୋଧ ପ୍ରକାଶ କରି କହିଲା, 'ପ୍ରଭୁ, ଯାହାଙ୍କ ଘରେ ଏପରି ଚର୍ଯ୍ୟା, ସେ ଘରେ ରହିବ କପରି ? ଗୃହିଣୀ ସର୍ବଦା ଭୃତ୍ୟର ମୁଖ ଆଘ୍ରାଣ କରୁଛନ୍ତି ।' ଏହା କହି ସେ ଚାଲି ଯିବାପାଇଁ ବାହାରିଲା । ବଣିକ ଚେଷ୍ଟା କରି ପ୍ରବୋଧ ଦେଇ ତାକୁ ଫେରାଇ ଆଣିଲେ । ତେଣୁ ମୁଁ କହୁଥିଲି—ଯିଏ ଉପସ୍ଥିତ ବିପଦକୁ ତତ୍‌କ୍ଷଣାତ୍ ସମାଧାନ କରିପାରେ ଇତ୍ୟାଦି ।

ତତ୍ପରେ ଯଦ୍‌ଭବିଷ୍ୟ କହିଲା;

ଯଦ୍‌ଭାବି ନ ତଦ୍‌ଭାବି ଭାବି ଚେନ୍ନ ତଦନ୍ୟଥା ।
ଇତି ଚିନ୍ତାବିଷଘ୍ନୋଽୟମଗଦଃ କିଂ ନ ପୀୟତେ ? ୧୦ ।

ଯାହା ହେବାକୁ ନ ଥିବ ତାହା କଦାପି ହେବ ନାହିଁ; ପୁଣି ଯାହା ହେବାକୁ ଥିବ ତାହା କେବେ ଅନ୍ୟଥା ହେବ ନାହିଁ । ଚିନ୍ତା-ରୂପକ ବିଷକୁ ଦୂର କରିବା ପାଇଁ ଏହା ହେଉଛି ଔଷଧ ସ୍ୱରୂପ । ଏହାକୁ କାହିଁକି ପିଉନାହିଁ ? ୧୦ ।

ତତ୍ପରେ ସକାଳେ ପ୍ରତ୍ୟୁତ୍ପନ୍ନମତି ଧୀବର୍‌ମାନଙ୍କଦ୍ୱାରା ଧରା-ପଡ଼ିବାରୁ ସେ ନିଜକୁ ମୃତବତ୍ ଦେଖାଇ ରହିଲା । ତାକୁ ଧୀବର୍‌ମାନେ ଜାଲରୁ ବାହାର କରିଦେବା ମାତ୍ରେ ସେ ଯଥାଶକ୍ତି ଡେଇଁଡେଇଁ ଗଭୀର ଜଳରେ ପ୍ରବେଶ କଲା । ଧୀବରମାନେ ଯଦ୍-ଭବିଷ୍ୟକୁ ଧରି ବଧ କଲେ ।

(କଚ୍ଛପ କହିଲା) ତେଣୁ ମୁଁ ଯେପରି ଅନ୍ୟ ଜଳାଶୟକୁ ଯାଇ ପାରିବି ତାହାର ଉପାୟ କର ।" ହଂସ ଦୁହେଁ କହିଲେ, "ଅନ୍ୟ ଜଳାଶୟକୁ ଗଲେ ତୁମର ମଙ୍ଗଳ, କିନ୍ତୁ ସ୍ଥଳ ଉପରେ ଚାଲି ଯିବାଦ୍ୱାରା ତୁମର ଅବସ୍ଥା କଅଣ ହେବ ?" କୂର୍ମ କହିଲା, "ମୁଁ ଯେପରି ତୁମ ଦୁହିଙ୍କ ସଙ୍ଗେ ଆକାଶମାର୍ଗରେ ଯାଇପାରିବି, ତାହାର ବ୍ୟବସ୍ଥା କର ।" ହଂସଦ୍ୱୟ କହିଲେ, "ସେଥିପାଇଁ କି ଉପାୟ କରାଯାଇପାରେ ?" କଚ୍ଛପ କହିଲା, "ତୁମେ ଦୁହେଁ ଖଣ୍ଡିଏ କାଠର ଅଗ୍ରଭାଗକୁ ନିଜ ନିଜ ଚଞ୍ଚୁରେ ଧରିଲେ ତାହାକୁ ମୁଁ ତୁଣ୍ଡରେ ଧରି ରହିବି । ତତ୍ପରେ ତୁମ ଦୁହିଙ୍କ ସାହାଯ୍ୟରେ ମୁଁ ସହଜରେ ଯାଇ ପାରିବି ।" ହଂସ ଦୁହେଁ କହିଲେ, "ଏ ଉପାୟଟି ସମ୍ଭବପର । କିନ୍ତୁ—

ଉପାୟଂ ଚିନ୍ତୟନ୍ ପ୍ରାଜ୍ଞୋ ହ୍ୟପାୟମପି ଚିନ୍ତୟେତ୍ ।
ପଶ୍ୟତୋ ବକମୂର୍ଖସ୍ୟ ନକୁଲୈର୍ଭକ୍ଷିତାଃ ପ୍ରଜାଃ । ୧୧ ।

ବୁଦ୍ଧିମାନ୍ ଲୋକର କର୍ତ୍ତବ୍ୟ ହେଉଛି, ସେ ଉପାୟ ଚିନ୍ତା କଲାବେଳେ ଅପାୟ ମଧ୍ୟ ଚିନ୍ତା କରିବ । ତାହା ନ କଲେ ମୂର୍ଖ ବକ ଚାହିଁ ରହିଥିଲାବେଳେ ନେଉଳମାନେ ତାର ସନ୍ତାନମାନଙ୍କୁ ଖାଇ-ଗଲାଭଳି ଘଟିବ । ୧୧ ।

କୂର୍ମ ପଚାରିଲା, "ସେ କଥା କିପରି ?"

ହଂସଦୁହେଁ କହିଲେ—

## କଥା-୪

ଉତ୍ତରାପଥର ଗୃଧ୍ରକୂଟ ନାମକ ପର୍ବତରେ ଗୋଟିଏ ବୃହତ୍ ପିପ୍ପଳ ବୃକ୍ଷ ଅଛି । ସେହି ବୃକ୍ଷରେ ଅନେକ ବକ ବାସ କରୁ-

ଥିଲେ । ବୃକ୍ଷର ନିମ୍ନଭାଗରେ ଗର୍ତ୍ତମଧ୍ୟରେ ଗୋଟିଏ ସର୍ପ ରହୁଥିଲା । ସେ ବୃକ୍ଷ ଉପରକୁ ଯାଇ ବକମାନଙ୍କର ଶାବକମାନଙ୍କୁ ଖାଇ ଯାଉଥିଲା । ବକମାନଙ୍କର କାତର ବିଳାପଧ୍ୱନି ଶୁଣି ଗୋଟିଏ ବୃଦ୍ଧ ବକ କହିଲା, "ମୁଁ ଯାହା କହୁଛି, ତାହା କର । ତୁମେମାନେ ଗୁଡ଼ିଏ ମତ୍ସ୍ୟ ଆଣି ସେଗୁଡ଼ିକୁ ନେଉଳମାନଙ୍କର ଗର୍ତ୍ତଠାରୁ ଆରମ୍ଭ କରି ସର୍ପର ଗର୍ତ୍ତ ପର୍ଯ୍ୟନ୍ତ ଗୋଟିଏ ଗୋଟିଏ କରି ଧାଡ଼ି ଆକାରରେ ପକାଇ ଦିଅ । ସେହି ଆହାର ଲୋଭରେ ନେଉଳମାନେ ଆସିଲେ ସର୍ପକୁ ଦେଖିବେ । ସର୍ପ ସହିତ ନକୁଳର ସହଜାତ ଶତ୍ରୁତା ହେତୁରୁ ସେମାନେ ସର୍ପକୁ ବଧ କରିବେ ।" ବକମାନେ ସେହିପରି କରିବାରୁ ତାହାହିଁ ଘଟିଲା ।

ଏହାପରେ ନେଉଳମାନେ ବୃକ୍ଷଉପରୁ ଶାବକମାନଙ୍କର ରାବ ଶୁଣି ପାରିଲେ । ତହୁଁ ସେମାନେ ବୃକ୍ଷ ଉପରେ ଚଢ଼ି ଶାବକ-ମାନଙ୍କୁ ଖାଇଗଲେ । ଏଥିପାଇଁ ଆମେ ଉପାୟ ଚିନ୍ତା କଲାବେଳେ ଅପାୟ ମଧ୍ୟ ଚିନ୍ତା କରିବା— ଇତ୍ୟାଦି କହୁଥିଲୁ ।

ଆମେ ଦୁହେଁ ତୁମକୁ ଆକାଶ ମାର୍ଗରେ ନେଇ ଯାଉଥିବା-ବେଳେ ଲୋକେ ତୁମକୁ ଦେଖି କିଛି ନା କିଛି କହିବେ । ଯଦି ତୁମେ ସେମାନଙ୍କ କଥାର ଉତ୍ତର ଦେବାକୁ ଯିବ, ତେବେ ତୁମର ମରଣ ନିଶ୍ଚିତ । ତେଣୁ ତୁମର ଏହିଠାରେହିଁ ରହିବା ଉଚିତ ।"

କୂର୍ମ କହିଲା, "ମୁଁ କଅଣ ଏଡ଼େ ନିର୍ବୋଧ ! ମୁଁ କିଛି ମାତ୍ର ଉତ୍ତର ଦେବିନାହିଁ । କିଛି ହେଲେ କହିବି ନାହିଁ ।" ସେହିପରି କାର୍ଯ୍ୟ କରାଗଲା । କୂର୍ମ ଆକାଶରେ ଏପରି ଯାଉଥିବାର ଦେଖି ଗୋରକ୍ଷକମାନେ ତାହା ପଛେ ପଛେ ଧାଇଁ କହିଲେ, "ଓହୋ ! ମହାନ୍ ଆଶ୍ଚର୍ଯ୍ୟ କଥା ! ଦୁଇଟା ପକ୍ଷୀ ଗୋଟାଏ କୂର୍ମକୁ ନେଇ

ଯାଉଅଛନ୍ତି ।’’ କେହି ଜଣେ କହିଲା, ‘ଯେବେ ଏ କୂର୍ମ ତଳେ ପଡ଼ିବ, ତେବେ ତାକୁ ଏହିଠାରେ ରାନ୍ଧି ଖାଇବା ।’’ ଆଉ ଜଣେ କହିଲା, ‘‘ପୋଖରୀ ପାଖରେ ପୋଡ଼ି ଖାଇବା ।’’ ଅନ୍ୟ କେହି ଜଣେ କହିଲା, ‘‘ଘରକୁ ନେଇ ଖାଇବା ।’’ ଏହି ସବୁ କଥା ଶୁଣି କଚ୍ଛପ କ୍ରୁଦ୍ଧ ହୋଇ ପୂର୍ବ ପ୍ରତିଜ୍ଞା ଭୁଲିଯାଇ କହି ପକାଇଲା—‘ତୁମେ ପାଉଁଶ ଖାଇବ ।’ ଏହା କହିଲା ମାତ୍ରେ କୂର୍ମ ତଳେ ପଡ଼ିଯିବାରୁ ଲୋକେ ତାହାକୁ ମାରି ପକାଇଲେ । ସେହି ହେତୁରୁ ମୁଁ (ଚକ୍ରବାକ) କହୁଥିଲି—ହିତାକାଙ୍କ୍ଷୀ ବନ୍ଧୁମାନଙ୍କର କଥାକୁ ଆଦରରେ ଗ୍ରହଣ ନକଲେ—ଇତ୍ୟାଦି ।

ଗୁପ୍ତଚର ବକ ସେଠାକୁ ଆସି କହିଲା, ‘‘ଦେବ ! ମୁଁ ପୂର୍ବରୁ କହୁଥିଲି ଯେ ପ୍ରତି ମୁହୂର୍ତ୍ତରେ ଦୁର୍ଗକୁ ପରୀକ୍ଷା କରି ଦେଖିବାକୁ ହେବ । ଆପଣମାନେ ତାହା କଲେ ନାହିଁ । ସେହି ଅସାବଧାନତାର ଫଳ ଏବେ ଭୋଗିବାକୁ ହେଲା । ଗୃଧ୍ରଦ୍ୱାରା ନିଯୁକ୍ତ ମେଘବର୍ଣ୍ଣ କାକ ଦ୍ୱାରା ଦୁର୍ଗ ଦାହ ହୋଇଅଛି ।’’

ରାଜା (ରାଜହଂସ) ଦୀର୍ଘନିଶ୍ୱାସ ପକାଇ କହିଲେ—

ପ୍ରଣୟାଦୁପକାରାଦ୍‌ବା ଯୋ ବିଶ୍ୱସିତି ଶତ୍ରୁଷୁ ।
ସ ସୁପ୍ତଇବ ବୃକ୍ଷାଗ୍ରାତ୍ ପତିତଃ ପ୍ରତିବୁଧ୍ୟତେ । ୧୨ ।

ଯେଉଁ ବ୍ୟକ୍ତି ପ୍ରୀତି ହେତୁରୁ ହେଉ ବା ଉପକାର ହେତୁରୁ ହେଉ ଶତ୍ରୁଠାରେ ବିଶ୍ୱାସ ସ୍ଥାପନ କରେ, ସେ ବୃକ୍ଷାଗ୍ରରେ ଶୋଇଥିବା ଲୋକ ଭୂମିରେ ପଡ଼ି ଜାଗି ଉଠିଲା ପରି କଷ୍ଟ ସମୟ ପରେ ଜାଗି ଉଠେ ।’’ ୧୨ ।

ଗୁପ୍ତଚର (ବକ) କହିଲା, ‘‘ଏଠାରେ ଦୁର୍ଗ ଧ୍ୱଂସ କରି ଯେତେବେଳେ ମେଘବର୍ଣ୍ଣ (କାକ) ଚାଲିଗଲା ସେତେବେଳେ ଚିତ୍ରବର୍ଣ୍ଣ

(ମୟୂର) ପ୍ରସନ୍ନ ହୋଇ କହିଲେ—'ଏହି ମେଘବର୍ଣ୍ଣଙ୍କୁ କର୍ପୂର ଦ୍ୱୀପର ରାଜପଦରେ ଅଭିଷିକ୍ତ କରାଯାଉ । କଥିତ ଅଛି—

କୃତକୃତ୍ୟସ୍ୟ ଭୃତ୍ୟସ୍ୟ କୃତଂ ନୈବ ପ୍ରଣାଶୟେତ୍ ।
ଫଳେନ, ମନସା, ବାଚା, ଦୃଷ୍ଟ୍ୟା ଚୈନଂ ପ୍ରହର୍ଷୟେତ୍ । ୧୩ ।

ଯେଉଁ ଭୃତ୍ୟ ତାହାର କର୍ତ୍ତବ୍ୟ ଉତ୍ତମରୂପେ ସମ୍ପାଦନ କରିଥାଏ, ତାହାର ଉପକାର ଭୁଲିଯିବା ଉଚିତ ନୁହେଁ । ତାକୁ ପୁରସ୍କାର ଦେଇ, ମନରେ, କଥାରେ ଓ ପ୍ରସନ୍ନ ଦୃଷ୍ଟିରେ ହୃଷ୍ଟ କରିବା ବିଧେୟ ।'' ୧୩ ।

ଚକ୍ରବାକ କହିଲା, "ମହାରାଜ, ଗୁପ୍ତଚର ଯାହା କହୁଥିଲା, ତାହା ଶୁଣିନ୍ତୁ କି ?" ରାଜା (ରାଜହଂସ) କହିଲେ, "ତାହାପରେ କଅଣ ହେଲା ?'' ଗୁପ୍ତଚର କହିଲା—ତାହାପରେ ପ୍ରଧାନମନ୍ତ୍ରୀ ଗୃଧ୍ର କହିଲା, 'ଏପରି କରିବା (ମେଘବର୍ଣ୍ଣଙ୍କୁ କର୍ପୂରଦ୍ୱୀପର ରାଜପଦ ଦେବା) ଉଚିତ ହେବ ନାହିଁ । ଅନ୍ୟ କୌଣସି ପୁରସ୍କାର ଦିଅନ୍ତୁ । ଯେହେତୁ—

ଅବିଚାରପ୍ରତୋ ଯୁକ୍ତିକଥନଂ ତୁଷଖଣ୍ଡନମ୍ ।
ନୀଚେଷୂପକୃତଂ ରାଜନ୍ ବାଲୁକାସ୍ୱିବ ମୂତ୍ରିତମ୍ । ୧୪ ।

ବିଚାରହୀନ ଲୋକ ସହିତ ଯୁକ୍ତିଯୁକ୍ତ କଥା କହିବା ଚଷୁ କୁଟିବା ସଙ୍ଗେ ସମାନ । ନୀଚ ଲୋକର ଉପକାର କରିବା ବାଲୁକାରେ ମୂତ୍ରତ୍ୟାଗ କରିବା ସଙ୍ଗେ ସମାନ । ୧୪ ।

(ଅର୍ଥାତ୍ ବାଲୁକାରେ ମୂତ୍ରତ୍ୟାଗ କଲେ ତାହା ଯେପରି ଅଳ୍ପକ୍ଷଣ ମଧ୍ୟରେ ଲୋପ ପାଇଯାଏ, ନୀଚ ଲୋକକୁ ବଡ଼ ପୁରସ୍କାର ଦେଲେ ସେ ମୂହୂର୍ତ୍ତକେ ତାହା ଭୁଲିଯାଏ ।)

ସେହିଁ ଆପଣ ମହାପୁରୁଷମାନଙ୍କର ଯୋଗ୍ୟ ସେଥିରେ ନୀଚ ଲୋକକୁ ବସାଇବା କଦାପି ଉଚିତ ନୁହେଁ । କଥିତ ଅଛି—

ନୀଚଃ ଶ୍ଳାଘ୍ୟପଦଂ ପ୍ରାପ୍ୟ ସ୍ୱାମିନଂ ହନ୍ତୁମିଚ୍ଛତି ।
ମୂଷିକୋ ବ୍ୟାଘ୍ରତାଂ ପ୍ରାପ୍ୟ ମୁନିଂ ହନ୍ତୁଂ ଗତୋ ଯଥା । ୧୫ ।

ମୂଷିକ ବ୍ୟାଘ୍ରରେ ରୂପାନ୍ତରିତ ହୋଇ ଯେପରି ମୁନିଙ୍କୁ ହତ୍ୟା କରିବାକୁ ଉଦ୍ୟତ ହୋଇଥିଲା ସେହିପରି ନୀଚ ଲୋକ ଉଚ୍ଚ ପଦ ପାଇଲେ ନିଜର ପ୍ରଭୁଙ୍କୁ ହତ୍ୟା କରିବାକୁ ଇଚ୍ଛାକରେ । ୧୫ ।

ଚିତ୍ରବର୍ଣ୍ଣ ପଚାରିଲେ, "ସେ କଥା କଅଣ ?"
ମନ୍ତ୍ରୀ କହିଲେ—

## କଥା-୪

ଗୌତମ ମହର୍ଷିଙ୍କ ତପୋବନରେ ମହାତପା ନାମରେ ଜଣେ ମୁନି ଥିଲେ । ଥରେ ସେ ଆଶ୍ରମ ନିକଟରେ କାକ ମୁଖରୁ ଗୋଟିଏ ମୂଷିକଶାବକ ପଡ଼ିଯିବାର ଦେଖିଲେ । ତହୁଁ ସେ ମୁନି ଦୟାର୍ଦ୍ର ହୋଇ ସେହି ମୂଷିକଶାବକକୁ ବନଧାନ୍ୟର କଣା ଖାଇବାକୁ ଦେଇ ବଢ଼ାଇଲେ । ଗୋଟିଏ ବିରାଡ଼ି ମୂଷିକକୁ ଦେଖି ତାହାକୁ ଖାଇବା-ପାଇଁ ତା ପଛରେ ଗୋଡ଼ାଇଲା । ବିରାଡ଼ିକୁ ଦେଖି ମୂଷିକ ମୁନିଙ୍କ କୋଳରେ ପଶିଗଲା । ତହୁଁ ମୁନି କହିଲେ, "ରେ ମୂଷିକ, ତୁ ଗୋଟିଏ ବିରାଡ଼ି ହୋଇଯାଆ ।" ତତ୍ପରେ ସେହି ବିରାଡ଼ି ଗୋଟିଏ କୁକୁର ଦେଖି ପଳାଇଲା । ତହୁଁ ମୁନି କହିଲେ, "ତୋର କୁକୁରକୁ ଭୟ ହେଉଛି । ତୁ ମଧ୍ୟ ଗୋଟିଏ କୁକୁର ହୋଇ-ଯାଆ ।" ସେ କୁକୁର ମଧ୍ୟ ଗୋଟିଏ ବ୍ୟାଘ୍ରକୁ ଭୟକଲା । ତତ୍ପରେ ମୁନି ତାହାକୁ ଗୋଟିଏ ବ୍ୟାଘ୍ର କରିଦେଲେ ।

ମୁନି ସେହି ବ୍ୟାଘ୍ରକୁ ମୂଷିକ ପରି ଦେଖୁଥିଲେ । ମୁନି ଓ ବ୍ୟାଘ୍ରକୁ ଦେଖି ଲୋକେ କହୁଥିଲେ, "ମୁନି ଏ ମୂଷିକଟିକୁ ବ୍ୟାଘ୍ର କରି ଦେଇଅଛନ୍ତି ।"

ଏହା ଶୁଣି ଶୁଣି ବ୍ୟାଘ୍ର ଅତ୍ୟନ୍ତ ଦୁଃଖିତ ହୋଇ ଚିନ୍ତାକଲା, "ଯେତେକାଳ ଯାଏ ଏ ମୁନି ରହିଥିବେ, ସେତେକାଳ ପର୍ଯ୍ୟନ୍ତ ମୋର ଏହି ନିନ୍ଦାଜନକ ରୂପପରିବର୍ତ୍ତନ କଥା ଲୋପ ପାଇବ ନାହିଁ ।" ଏହିପରି ଭାବିକରି ସେହି ବ୍ୟାଘ୍ରରୂପଧାରୀ ମୂଷିକ ମୁନିଙ୍କୁ ବଧ କରିବାକୁ ଉଦ୍ୟତ ହେଲା । ମୁନି ତାହା ଜାଣି ପାରି ପୁନର୍ମୂଷିକୋଭବ (ପୁଣି ତୁ ମୂଷା ହୋଇଯାଆ) କହି ତାକୁ ପୂର୍ବର ମୂଷା କରିଦେଲେ । ଏହି ହେତୁରୁ ମୁଁ କହୁଥିଲି—ନୀଚ ଲୋକ ଉଚ୍ଚ ପଦ ପାଇଲେ ଇତ୍ୟାଦି । ପୁଣି ଏ ବାୟସକୁ ରାଜପଦରେ ଅଭିଷିକ୍ତ କରିବା ସହଜସାଧ୍ୟ ମନେ କରନ୍ତୁ ନାହିଁ । ଶୁଣନ୍ତୁ—

ଭକ୍ଷୟିତ୍ୱା ବହୂନ୍ ମତ୍ସ୍ୟାନୁତ୍ତମାଧମମଧ୍ୟମାନ୍ ।
ଅତିଲୋଭଦ୍ ବକଃ ପଶ୍ଚାନ୍ମୃତଃ କର୍କଟକଗ୍ରହାତ୍ । ୧୭ ।

ଉତ୍ତମ, ମଧ୍ୟମ ଓ ଅଧମ ପ୍ରକାରର ବହୁ ମତ୍ସ୍ୟ ଭୋଜନ କଲାପରେ ବକ ଅତି ଲୋଭହେତୁରୁ କର୍କଟ ଦ୍ୱାରା ଧୃତ ହୋଇ ମୃତ୍ୟୁପ୍ରାପ୍ତ ହୋଇଥିଲା । ୧୭ ।

ଚିତ୍ରବର୍ଣ୍ଣ ପଚାରିଲା—ସେ କଥା କଅଣ ?

ମନ୍ତ୍ରୀ (ଗୃଧ୍ର) କହିଲା—

## କଥା-୭

ମାଳବ ଦେଶରେ ପଦ୍ମଗର୍ଭ ନାମରେ ଗୋଟିଏ ପୁଷ୍କରିଣୀ ଅଛି । ସେଠାରେ ଗୋଟିଏ ବୃଦ୍ଧ, ବଳହୀନ ବକ ନିଜକୁ ବ୍ୟାକୁଳ

ହେଲାପରି ଛଳନା କରି ରହିଥିଲା । ଗୋଟିଏ କର୍କଟ ଦୂରରୁ ତାହାକୁ ଦେଖିପାରି ପଚାରିଲା—ଆପଣ ଆହାର ତ୍ୟାଗ କରି ଏଠାରେ କାହିଁକି ବସିଛନ୍ତି ? ବକ ଉତ୍ତର କଲା—ମାଛମାନେ ହେଉଛନ୍ତି ମୋ ଜୀବନର ଅବଲମ୍ବନ । କେଉଟମାନେ ଆସି ସେ-ମାନଙ୍କୁ ମାରି ପକାଇବେ ଏହି ସମ୍ବାଦ ମୁଁ ନଗର ଉପକଣ୍ଠରେ ଶୁଣିବାକୁ ପାଇଲି । ଏଣୁ ଆହାର ବିନା ମୋର ମରଣ ଉପସ୍ଥିତ ବୋଲି ଜାଣି ପାରିବାରୁ ମୋର ଆହାର ପ୍ରତି ବିତୃଷ୍ଣା ଆସି ଯାଇଛି । ଏହାପରେ ମତ୍ସ୍ୟମାନେ ବିଚାର କରିବାକୁ ଲାଗିଲେ—ବର୍ତ୍ତମାନ ସମୟରେ ଏହି ବକହିଁ ପରମ ଉପକାରୀ ବୋଲି ବୋଧ ହେଉଅଛି । ତେଣୁ ତାକୁ ପଚାରିବା, ଏବେ ଆମର କର୍ତ୍ତବ୍ୟ କଅଣ ? କଥିତ ଅଛି—

ଉପକର୍ତ୍ତ୍ରାଽରିଣା ସନ୍ଧିର୍ନ ମିତ୍ରେଣାଽପକାରିଣା ।
ଉପକାରାଽପକାରୌ ହି ଲକ୍ଷ୍ୟଂ ଲକ୍ଷଣମେତୟୋଃ । ୧୭ ।

ଉପକାରୀ ଶତ୍ରୁ ସଙ୍ଗେ ସନ୍ଧି କରିବା ଭଲ; କିନ୍ତୁ ଅପକାରୀ ମିତ୍ର ସଙ୍ଗେ ସନ୍ଧି କରିବା ଉଚିତ ନୁହେଁ । ଶତ୍ରୁ ଓ ମିତ୍ରର ଲକ୍ଷଣ ହେଉଛି ଅପକାର ଓ ଉପକାର କରିବା । ୧୭ ।

ମତ୍ସ୍ୟମାନେ କହିଲେ, "ହେ ବକ, ଏବେ ଆମର ଜୀବନ ରକ୍ଷାର ଉପାୟ କଅଣ ?" ବକ କହିଲା, "ଅନ୍ୟ ଜଳାଶୟରେ ଆଶ୍ରୟ ନେବାହିଁ ହେଉଛି ରକ୍ଷାର ଏକମାତ୍ର ଉପାୟ । ମୁଁ ତୁମ-ମାନଙ୍କୁ ଗୋଟିଏ ଗୋଟିଏ କରି ସେଠାକୁ ନେଇଯିବି ।" ମତ୍ସ୍ୟମାନେ କହିଲେ, "ତାହାହିଁ କରାଯାଉ ।" ତାହାପରେ ସେହି ଦୁଷ୍ଟ ବକ ମତ୍ସ୍ୟମାନଙ୍କୁ ଗୋଟିଏ ଗୋଟିଏ କରି ନେଇ ଖାଇଲା । ଏହାପରେ

କର୍କଟ କହିଲା, "ହେ ବକ, ମୋତେ ମଧ୍ୟ ସେହିସ୍ଥାନକୁ ନେଇ-ଯାଅ ।" ତହୁଁ ବକ ମଧ୍ୟ ଅପୂର୍ବ କର୍କଟମାଂସ ଖାଇବା ଇଚ୍ଛାରେ ଅତି ଆଗ୍ରହରେ ତାକୁ ଜଳରୁ ଆଣି ସ୍ଥଳ ଉପରେ ଧରିଲା । ସ୍ଥାନଟିକୁ ମତ୍ସ୍ୟକଣ୍ଟକରେ ପରିପୂର୍ଣ୍ଣ ଦେଖି କର୍କଟ ଚିନ୍ତାକଲା—ମୁଁ ହତଭାଗ୍ୟ, ଏବେ ମୋର ମରଣ ହେଲା । ହେଉ, ବର୍ତ୍ତମାନ ଏହା ପ୍ରତି କାଳୋଚିତ ବ୍ୟବହାର କରିବି । କାରଣ—

ତାବଦ୍ ଭୟେନ ଭେତବ୍ୟଂ ଯାବଦ୍‌ଭୟମନାଗତମ୍ ।
ଆଗତଂ ତୁ ଭୟଂ ଦୃଷ୍ଟ୍ୱା ପ୍ରହର୍ତ୍ତବ୍ୟମଭୀତବତ୍ ॥ ୧୮ ॥

ଯେତେବେଳ ପର୍ଯ୍ୟନ୍ତ ଭୟ ସମ୍ମୁଖରେ ଉପସ୍ଥିତ ହୋଇ-ନାହିଁ ସେତେବେଳଯାଏ ତାକୁ ଭୟ କରିବା ଉଚିତ । କିନ୍ତୁ ଭୟକୁ ଆଗରେ ଦେଖିଲେ ନିର୍ଭୀକ ଭାବରେ ତାହା ଉପରେ ପ୍ରହାର କରିବା କର୍ତ୍ତବ୍ୟ । ୧୮ ।

ଅଭିଯୁକ୍ତୋ ଯଦା ପଶ୍ୟେନ୍ନ କିଞ୍ଚିଦ୍ ଗତିମାତ୍ମନଃ ।
ଯୁଧ୍ୟମାନସ୍ତଦା ପ୍ରାଜ୍ଞୋ ମ୍ରିୟେତ ରିପୁଣା ସହ ॥ ୧୯ ॥

ବୁଦ୍ଧିମାନ୍ ଲୋକ ଯେତେବେଳେ ଶତ୍ରୁଦ୍ୱାରା ଆକ୍ରାନ୍ତ ହୋଇ ଆତ୍ମରକ୍ଷାର କୌଣସି ଉପାୟ ନ ଦେଖିବ ସେତେବେଳେ ସେ ଶତ୍ରୁ ସହ ଯୁଦ୍ଧ କରି ପ୍ରାଣତ୍ୟାଗ କରିବା ଉଚିତ । ୧୯ ।

ଏହିପରି ବିଚାରି କର୍କଟ ସେହି ବକର ଗଳଦେଶକୁ ଛିନ୍ନ କରିଦେଲା । ତହୁଁ ସେ ବକ ପଞ୍ଚତ୍ୱ ପ୍ରାପ୍ତ ହେଲା । ଏହି ହେତୁରୁ ମୁଁ କହିଥିଲି—ବହୁ ମତ୍ସ୍ୟ ଭୋଜନ କଲାପରେ ଇତ୍ୟାଦି ।

ତତ୍ପରେ ଚିତ୍ରବର୍ଣ୍ଣ କହିଲା, "ହେ ମନ୍ତ୍ରୀ, ତେବେ ଶୁଣ । ମୁଁ ବିଚାରୁଛି, ମେଘବର୍ଣ୍ଣ ଏଠାରେ ରାଜାରୂପେ ରହି କର୍ପୂରଦ୍ୱୀପର

ସମସ୍ତ ଉତ୍ତମ ଦ୍ରବ୍ୟ ମୋନକଣ୍ଠକୁ ପଠାଇବ । ତାହାହେଲେ ଆମେ-ମାନେ ବିନ୍ଧ୍ୟାଚଳରେ ମହାସୁଖରେ ରହି ପାରିବା ।" ଏହା ଶୁଣି ଦୂରଦର୍ଶୀ (ଗୃଧ୍ର) ହସି ହସି କହିଲା, "ମହାରାଜ;

ଅନାଗତବତୀଂ ଚିନ୍ତାଂ କୃତ୍ୱା ଯସ୍ତୁ ପ୍ରହୃଷ୍ୟତି ।
ସ ତିରସ୍କାରମାପ୍ନୋତି ଭଗ୍ନଭାଣ୍ଡୋ ଦ୍ୱିଜୋ ଯଥା । ୨୦ ।

ଯେଉଁ ଲୋକ ଭବିଷ୍ୟତ କଳ୍ପନା କରି ସୁଖ ଆଶାରେ ଆନନ୍ଦିତ ହୁଏ, ସେ କୁମ୍ଭକାରର ହାଣ୍ଡି ଭାଙ୍ଗିଥିବା ବ୍ରାହ୍ମଣ ପରି ତିରସ୍କାରର ପାତ୍ର ହୁଏ ।" ୨୦ ।

ରାଜା (ଚିତ୍ରବର୍ଣ୍ଣ) ପଚାରିଲେ, "ସେ କଥା କିପରି ?"

ମନ୍ତ୍ରୀ (ଗୃଧ୍ର) କହିଲେ—

## କଥା-୭

ଦେବୀକୋଟ ନାମକ ନଗରରେ ଦେବଶର୍ମା ବୋଲି ଜଣେ ବ୍ରାହ୍ମଣ ଥିଲେ । ମହାବିଷୁବସଂକ୍ରାନ୍ତି ଦିନ କେହି ଜଣେ ତାଙ୍କୁ ଛତୁପୂର୍ଣ୍ଣ ମାଟିସରାଟିଏ ଦେଲା । ସେ ତାହାକୁ ଧରି ଯାଉ ଯାଉ ପ୍ରଖର ସୂର୍ଯ୍ୟକିରଣରେ ବ୍ୟାକୁଳ ହୋଇ ଜଣେ କୁମ୍ଭକାରର ମୃତ୍ତିକାପାତ୍ର-ପରିପୂର୍ଣ୍ଣ ଗୃହର ଏକ ପାର୍ଶ୍ୱରେ ଶୋଇଲେ । ଛତୁକୁ ରକ୍ଷା କରିବା ପାଇଁ ସେ ହାତରେ ଗୋଟିଏ ବାଡ଼ି ଧରି ଚିନ୍ତା କଲେ, "ଯଦି ମୁଁ ଏହି ଛତୁ ସରାଟି ବିକି ଦଶକେଡ଼ା କଉଡ଼ି ପାଏଁ, ତେବେ ସେହି କଉଡ଼ି ମୂଲ୍ୟରେ କଳସୀ, ସରା ପ୍ରଭୃତି କ୍ରୟ କରି ତାକୁ ବିକ୍ରୟ କରିବାଦ୍ୱାରା ବହୁତ ଧନ ପାଇବି । ସେଥିରେ ବାରମ୍ବାର ବସ୍ତ୍ର, ଗୁବାକ ଆଦି କ୍ରୟ ଓ ବିକ୍ରୟ କରି ଲକ୍ଷ ଲକ୍ଷ ମୁଦ୍ରା ଅର୍ଜିବି ଓ ଚାରୋଟି ସ୍ତ୍ରୀ ବିବାହ କରିବି । ଚାରି ସପତ୍ନୀଙ୍କ ମଧ୍ୟରେ ଯିଏ ଅଧିକ

ରୂପଯୌବନସମ୍ପନ୍ନା ହୋଇଥିବ ତାକୁ ଅଧିକ ଆଦର କରିବ । ସପତ୍ନୀମାନେ ଆପଣା ମଧ୍ୟରେ କଳହ କଲେ ରାଗରେ ସମସ୍ତଙ୍କୁ ଲଗୁଡ଼ରେ ପ୍ରହାର କରିବି ।" ଏହା କହିବା ସଙ୍ଗେ ସଙ୍ଗେ ସେ ହାତରେ ଧରିଥିବା ବାଡ଼ିଟିକୁ ଫିଙ୍ଗି ଦେଲେ । ଏହା ଫଳରେ ନିଜର ଛତୁ ସବୁଟି ଭାଙ୍ଗିଗଲା ଓ ତାହା ସଙ୍ଗେ ସଙ୍ଗେ କୁମ୍ଭକାରର ଅନେକ ଗୁଡ଼ିଏ ପାତ୍ର ମଧ୍ୟ ଭାଙ୍ଗିଗଲା । ଶବ୍ଦ ଶୁଣି କୁମ୍ଭକାର ସେଠାକୁ ଆସି ହାଣ୍ଡିଗୁଡ଼ିକ ଭାଙ୍ଗି ପଡ଼ିଥିବାର ଦେଖି ବ୍ରାହ୍ମଣଙ୍କୁ ତିରସ୍କାର କଲା ଓ ଗୃହରୁ ତଡ଼ି ବାହାର କରିଦେଲା । ସେହି ହେତୁରୁ ମୁଁ କହୁଥିଲି— ଯେଉଁ ଲୋକ ଭବିଷ୍ୟତ କଳ୍ପନା କରି—ଇତ୍ୟାଦି ।

ତତ୍ପରେ ରାଜା (ଚିତ୍ରବର୍ଣ୍ଣ) ମନ୍ତ୍ରୀ ( ଦୂରଦର୍ଶୀ ଗୃଧ୍ର ) ଙ୍କୁ ଏକାନ୍ତରେ ପଚାରିଲେ, "ତାତ, ବର୍ତ୍ତମାନ କଅଣ କର୍ତ୍ତବ୍ୟ, ସେ ବିଷୟରେ ଉପଦେଶ ଦିଅ ।" ଗୃଧ୍ର କହିଲା—

"ମଦୋଦ୍ଧତସ୍ୟ ନୃପତେଃ ପ୍ରକୀର୍ଣ୍ଣସ୍ୟେବ ଦନ୍ତିନଃ ।
ଗଚ୍ଛନ୍ତ୍ୟୁନ୍ମାର୍ଗଯାତସ୍ୟ ନେତାରଃ ଖଳୁ ବାଚ୍ୟତାମ୍ । ୨୧ ।

ଯେପରି ମଦମତ୍ତ ହସ୍ତୀ ବିପଥରେ ଗଲେ ମାହୁନ୍ତର ଦୋଷ ହୁଏ, ସେହିପରି ଗର୍ବୋଦ୍ଧତ ରାଜା ଉନ୍ମାର୍ଗଗାମୀ ହେଲେ ମନ୍ତ୍ରୀମାନେ ଦୋଷର ପାତ୍ର ହୋଇଥାନ୍ତି । ୨୧ । ଶୁଣନ୍ତୁ ମହାରାଜ ! ଆମେ କଅଣ ନିଜର ବଳ ବିକ୍ରମଦ୍ୱାରା ଦୁର୍ଗ ଅଧିକାର କରିଥାଏଁ ? କି ଆପଣଙ୍କର ଉପାୟରେ ଅଧିକାର କରିଛୁ ?" ରାଜା କହିଲେ, "ତୁମରି ଉପାୟ ବଳରେ ।" ଗୃଧ୍ର କହିଲା, "ଯଦି ମୋର ଉପଦେଶ ଗ୍ରହଣ କରନ୍ତି, ତେବେ ସ୍ୱଦେଶକୁ ଯାଆନ୍ତୁ । ତାହା ନ କଲେ ବର୍ଷାକାଳ ଆସିଲେ ଶତ୍ରୁ ବଳରେ ଆମର ସମକକ୍ଷ ହେବ ଓ

ସେତେବେଳେ ଯୁଦ୍ଧ ଲାଗିଲେ ଶତ୍ରୁ ରାଜ୍ୟରେ ରହିଥିବାରୁ ସ୍ୱଦେଶକୁ ଫେରିଯିବା ମଧ୍ୟ ଆମ ପକ୍ଷରେ ଅସମ୍ଭବ ହୋଇ ପଡ଼ିବ । ତେଣୁ ନିଜର ସୁଖ ଓ ଯଶ ପାଇଁ ସନ୍ଧି କରିବାକୁ ଯାଆନ୍ତୁ । ଦୁର୍ଗ ନଷ୍ଟ ହୋଇ ଯାଇଛି, ଆପଣ ଯଶ ଅର୍ଜନ କରିଅଛନ୍ତି । ଏହାହିଁ ହେଉଛି ମୋର ପରାମର୍ଶ । ଯେହେତୁ—

ଯୋ ହି ଧର୍ମଂ ପୁରସ୍କୃତ୍ୟ ହିତ୍ୱା ଭର୍ତ୍ତୁଃ ପ୍ରିୟାଽପ୍ରିୟେ
ଅପ୍ରିୟାଣ୍ୟାହ ପଥ୍ୟାନି ତେନ ରାଜା ସହାୟବାନ୍ । ୨୨ ।

ମନ୍ତ୍ରୀ ଯେବେ ଧର୍ମକୁ ସମ୍ମୁଖରେ ରଖି ରାଜାଙ୍କର କଅଣ ପ୍ରିୟ, କଅଣ ଅପ୍ରିୟ ସେଥିପ୍ରତି ଚିନ୍ତା ନ କରି ରାଜାଙ୍କର ଅପ୍ରିୟ ଅଥଚ ହିତକର ପରାମର୍ଶ ଦିଏ ତେବେ ସେ ରାଜା ପ୍ରକୃତରେ ସହାୟବାନ୍ । ୨୨ । ପୁଣି—

ସୁହୃଦ୍‌ବଳଂ, ତଥା ରାଜ୍ୟମାତ୍ମାନଂ, କୀର୍ତ୍ତିମେବ ଚ ।
ଯୁଧି ସନ୍ଦେହଦୋଳାସ୍ଥଂ କୋହି କୁର୍ଯ୍ୟାଦବାଳିଶଃ । ୨୩ ।

କେଉଁ ବୁଦ୍ଧିମାନ୍ ଲୋକ ଯୁଦ୍ଧରେ ପ୍ରବେଶ କରି ବନ୍ଧୁ, ସେନା, ରାଜ୍ୟ, କୀର୍ତ୍ତି ତଥା ନିଜକୁ ସନ୍ଦେହରୂପକ ଦୋଳାରେ ବସାଇବ ? ୨୩ । ପୁଣି—

ସନ୍ଧିମିଚ୍ଛେତ୍ ସମେନାଽପି ସନ୍ଦିଗ୍‌ଧୋ ବିଜୟୋ ଯୁଧି ।
ନ ହି ସଂଶୟିତଂ କୁର୍ଯ୍ୟାଦିତ୍ୟୁବାଚ ବୃହସ୍ପତିଃ । ୨୪ ।

ଯୁଦ୍ଧରେ ବିଜୟ ସନ୍ଦେହପୂର୍ଣ୍ଣ; ତେଣୁ ସମବଳ ବିଶିଷ୍ଟ ଶତ୍ରୁ ସହିତ ସନ୍ଧି କରିବାକୁ ଇଚ୍ଛା କରିବ । ବୃହସ୍ପତି କହିଅଛନ୍ତି— ଯେଉଁ କାର୍ଯ୍ୟରେ ସନ୍ଦେହ ଥିବ, ସେ କାର୍ଯ୍ୟ କଦାପି କରିବ ନାହିଁ । ୨୪ । ପୁଣି—

ଯୁଦ୍ଧେ ବିନାଶୋ ଭବତି କଦାଚିଦୁଭୟୋରପି ।
ସୁନ୍ଦୋପସୁନ୍ଦାବନ୍ୟୋନ୍ୟଂ ନଷ୍ଟୌ ତୁଲ୍ୟବଳୌ ନ କିମ୍ । ୨୫ ।

ଯୁଦ୍ଧରେ କେବେକେବେ ଉଭୟ ପକ୍ଷର ବିନାଶ ଘଟିଥାଏ । ସମାନ ବଳବିଶିଷ୍ଟ ସୁନ୍ଦ ଓ ଉପସୁନ୍ଦ ପରସ୍ପର ଯୁଦ୍ଧ କରି ଉଭୟେ ନଷ୍ଟ ହୋଇ ନ ଥିଲେ କି ? ୨୫ ।

(ଚିତ୍ରବର୍ଣ୍ଣ) ରାଜା କହିଲେ, "ସେ କଥା କଅଣ ?"

(ଗୃଧ୍ର) ମନ୍ତ୍ରୀ କହିଲେ—

## କଥା-୮

ପୂର୍ବ କାଳରେ ସୁନ୍ଦ ଓ ଉପସୁନ୍ଦ ନାମକ ଦୁଇ ସହୋଦର ଘୋର କାୟକ୍ଳେଶ ସହି ତିନି ଭୁବନର ଆଧିପତ୍ୟ କାମନାରେ ଦୀର୍ଘକାଳ ପର୍ଯ୍ୟନ୍ତ ଚନ୍ଦ୍ରଚୂଡ଼ ଶିବଙ୍କର ଆରାଧନା କଲେ । ସେମାନଙ୍କ ଉପରେ ପରିତୁଷ୍ଟ ହୋଇ ଭଗବାନ ଶିବ କହିଲେ, "ବର ପ୍ରାର୍ଥନା କର ।" ଏହାପରେ ସେ ଦୁହିଁଙ୍କ କଣ୍ଠରେ ସରସ୍ୱତୀଙ୍କ ପ୍ରଭାବରୁ ସେ ଦୁହେଁ ଯାହା ମାଗିବାକୁ ଇଚ୍ଛା କରିଥିଲେ ତାହା ନ ମାଗି ଅନ୍ୟ କିଛି ମାଗିବାକୁ ଯାଇ କହିଲେ, "ଯଦି ଆମ ଦୁହିଁଙ୍କ ଉପରେ ସନ୍ତୁଷ୍ଟ ହୋଇଅଛ, ତେବେ ଆମକୁ ନିଜର ପ୍ରିୟ-ପତ୍ନୀ ପାର୍ବତୀଙ୍କୁ ଦିଅ ।"

ଭଗବାନ୍ ଶିବ ଏଥିରେ କ୍ରୁଦ୍ଧ ହୋଇ ଉଠିଲେ; କିନ୍ତୁ ନିଜର ବରଦାନ କଥା ରକ୍ଷା କରିବା ଆବଶ୍ୟକ ମନେ କରି ସେ ମୂର୍ଖ ଦୁହିଙ୍କ ହାତରେ ପାର୍ବତୀଙ୍କୁ ଦାନ କଲେ । ପାର୍ବତୀଙ୍କ ରୂପ-ଲାବଣ୍ୟରେ 'ମୁଗ୍ଧ, ଜଗତର ପୀଡ଼ାଦାୟକ, ଉତ୍ସୁକ, ପାପାନ୍ଧ-କାରରେ ଅନ୍ଧ ସେ ଦୁହେଁଯାକ 'ଇଏ ମୋର', 'ଇଏ ମୋର' କହି

ପରସ୍ପର କଳହ କରିବାକୁ ଲାଗିଲେ । ସେ ଦୁହେଁ ମନେ କଲେ ଯେ କୌଣସି ମଧ୍ୟସ୍ଥଙ୍କୁ ଏ ବିଷୟରେ ପଚାରିବାକୁ ହେବ । ତହୁଁ ସେହି ଶିବ ବୃଦ୍ଧ ବ୍ରାହ୍ମଣ ରୂପ ଧରି ସେଠାରେ ଉପସ୍ଥିତ ହେଲେ । ଦୁହେଁ ବ୍ରାହ୍ମଣଙ୍କୁ କହିଲେ—"ଆମେ ଦୁହେଁ ନିଜ ବଳରେ ଏହାଙ୍କୁ ପାଇ-ଅଛୁ ? ସେ ଆମ ଦୁହିଙ୍କ ମଧ୍ୟରୁ କାହାର ହେବେ ?" ବ୍ରାହ୍ମଣ କହିଲେ—

ଜ୍ଞାନଶ୍ରେଷ୍ଠୋ ଦ୍ୱିଜଃ ପୂଜ୍ୟଃ କ୍ଷତ୍ରିୟୋ ବଳବାନପି ।
ଧନଧାନ୍ୟାଽଧିକୋ ବୈଶ୍ୟଃ ଶୂଦ୍ରସ୍ତୁ ଦ୍ୱିଜସେବୟା । ୨୭ ।

ଜ୍ଞାନଶ୍ରେଷ୍ଠ ବ୍ରାହ୍ମଣ, ବଳବାନ୍ କ୍ଷତ୍ରିୟ, ଧନଧାନ୍ୟର ଅଧିକାରୀ ବୈଶ୍ୟ ଓ ଦ୍ୱିଜସେବାରେ ଶ୍ରେଷ୍ଠ ଶୂଦ୍ର ପୂଜାର ପାତ୍ର ହୋଇ-ଥାନ୍ତି । ୨୭ ।

ତୁମେ ଦୁହେଁ ହେଉଛ କ୍ଷତ୍ରିୟ ଧର୍ମର ଅନୁଗାମୀ । ତେଣୁ ତୁମ ଦୁହିଙ୍କ ମଧ୍ୟରେ କିଏ ଶ୍ରେଷ୍ଠ, ତାହା ନିର୍ଣ୍ଣୟ କରିବାର ଉପାୟ ହେଉଛି ଯୁଦ୍ଧ ।

ବ୍ରାହ୍ମଣ ଏପରି କହିବାରୁ 'ଏ ଯାହା କହିଲେ ତାହା ଠିକ୍' ଏହା କହି ସମାନବଳବିଶିଷ୍ଟ ଦୁହେଁଯାକ ଏକ ସମୟରେ ପରସ୍ପରକୁ ଆଘାତ କରି ପ୍ରାଣତ୍ୟାଗ କଲେ ।

ଏହି ହେତୁରୁ ମୁଁ କହୁଥିଲି, ସମବଳବିଶିଷ୍ଟ ଶତ୍ରୁ ସହିତ ସନ୍ଧି—ଇତ୍ୟାଦି ।

ରାଜା (ଚିତ୍ରବର୍ଣ୍ଣ) କହିଲେ, "ତେବେ ତୁମେ ଆଗରୁ ମୋତେ ଏହି ଉପଦେଶ ଦେଲ ନାହିଁ କାହିଁକି ?" ମନ୍ତ୍ରୀ (ଦୂରଦର୍ଶୀ ଗୃଧ୍ର) କହିଲେ, "ଆପଣ କଅଣ ମୋ କଥା ଶେଷ ପର୍ଯ୍ୟନ୍ତ ଶୁଣିଲେ ?

ସେତେବେଳେ ମଧ୍ୟ ମୋର ପରାମର୍ଶରେ ଏ ଯୁଦ୍ଧ ଆରମ୍ଭ ହୋଇ ନଥିଲା । ସାଧୁଗୁଣବିଶିଷ୍ଟ ରାଜା (ରାଜହଂସ) ହିରଣ୍ୟଗର୍ଭଙ୍କ ସହିତ ଯୁଦ୍ଧ କରିବା ଉଚିତ ନୁହେଁ । କଥିତ ଅଛି—

> ସତ୍ୟାର୍ଯ୍ୟୌ, ଧାର୍ମିକୋଽନାର୍ଯ୍ୟୋ, ଭ୍ରାତୃସଙ୍ଘାତବାନ୍ ବଳୀ ।
> ଅନେକଯୁଦ୍ଧବିଜୟୀ, ସନ୍ଧେୟାଃ ସପ୍ତ କୀର୍ତ୍ତିତାଃ । ୨୭ ।

ସତ୍ୟବାଦୀ, ଆର୍ଯ୍ୟ ଧର୍ମର ପାଳକ, ଧାର୍ମିକ, ନୀଚବଂଶୀୟ, ବହୁଭ୍ରାତା ସମନ୍ୱିତ, ବଳବାନ୍, ବହୁଯୁଦ୍ଧରେ ବିଜୟୀ—ଏ ସାତ ଶ୍ରେଣୀର ରାଜାଙ୍କ ସଙ୍ଗେ ସନ୍ଧି କରିବା ବିଧେୟ । ୨୭ ।

> ସତ୍ୟୋଽନୁପାଳୟନ୍ ସତ୍ୟଂ ସନ୍ଧିତୋ ନୈତି ବିକ୍ରିୟାମ୍ ।
> ପ୍ରାଣବାଧେଽପି ସୁବ୍ୟକ୍ତମାର୍ଯ୍ୟୋ ନାଽୟାତ୍ୟନାର୍ଯ୍ୟତାମ୍ । ୨୮ ।

ସତ୍ୟପରାୟଣ ରାଜା ସନ୍ଧି ସ୍ଥାପନ କଲାପରେ ମଧ୍ୟ କେବେ ହେଲେ ଦୋଷଯୁକ୍ତ ହୁଏ ନାହିଁ (ଅର୍ଥାତ୍ ସନ୍ଧିର ସର୍ତ୍ତ ଲଙ୍ଘନ କରେ ନାହିଁ) । ପ୍ରାଣସଙ୍କଟ ଉପସ୍ଥିତ ହେଲେ ମଧ୍ୟ ଆର୍ଯ୍ୟଧର୍ମପାଳନକାରୀ ପୁରୁଷ କଦାପି ଅନାର୍ଯ୍ୟତାକୁ ଗ୍ରହଣ କରେ ନାହିଁ, ଏକଥା ସୁସ୍ପଷ୍ଟ । ୨୮ ।

> ଧାର୍ମିକସ୍ୟାଽଭିଯୁକ୍ତସ୍ୟ ସର୍ବ ଏବ ହି ଯୁଧ୍ୟତେ ।
> ପ୍ରଜାନୁରାଗାଦ୍ଧର୍ମାଚ୍ଚ ଦୁଃଖୋଚ୍ଛେଦ୍ୟୋ ହି ଧାର୍ମିକଃ । ୨୯ ।

ଧାର୍ମିକ ରାଜାଙ୍କ ଉପରେ ଶତ୍ରୁର ଆକ୍ରମଣ ହେଲେ ସମସ୍ତେ (ମନ୍ତ୍ରୀ, ସେନା, ପ୍ରଜାପ୍ରଭୃତି) ତାଙ୍କ ପାଇଁ ଯୁଦ୍ଧ କରନ୍ତି । ପ୍ରଜାନୁରାଗ ଓ ଧର୍ମ ହେତୁରୁ ଧାର୍ମିକ ରାଜାଙ୍କୁ ପରାଜିତ କରିବା ଅତ୍ୟନ୍ତ କଠିନ । ୨୯ ।

ସନ୍ଧିଃ କାର୍ଯ୍ୟୋଽପ୍ୟନାର୍ଯ୍ୟେଣ ବିନାଶେ ସମୁପସ୍ଥିତେ ।
ବିନା ତସ୍ୟାଽଶ୍ରୟେଣାଽର୍ଯୋ ନ କୁର୍ଯ୍ୟାତ୍ କାଳଯାପନମ୍ । ୩୦ ।

ନିଜ ବିନାଶ ଆସନ୍ନ ଦେଖିଲେ ଅନାର୍ଯ୍ୟ (ଦୁଷ୍ଟ ଶତ୍ରୁ ରାଜା) ସଙ୍ଗେ ସନ୍ଧି କରିବା ଉଚିତ । କାରଣ ତାହାର ସାହାଯ୍ୟ ବିନା ଆର୍ଯ୍ୟ (ଧର୍ମ ପାଳନକାରୀ) ରାଜା ସମୟ ଅତିବାହିତ କରି ପାରିବ ନାହିଁ । ୩୦ ।

ସଂହତତ୍ୱାଦ୍ ଯଥା ବେଣୁର୍ନିବିଡ଼ୈଃ କଣ୍ଟକୈର୍ବୃତଃ
ନ ଶକ୍ୟତେ ସମୁଚ୍ଛେତ୍ତୁଂ ଭ୍ରାତୃସଂଘାତବାଂସ୍ତଥା । ୩୧ ।

ନିବିଡ଼ କଣ୍ଟକଦ୍ୱାରା ଆବୃତ ହୋଇଥିବାରୁ ବାଉଁଶ ଯେପରି ଏକତା ହେତୁରୁ ଦୁର୍ଭେଦ୍ୟ ହୋଇଥାଏ, ଭ୍ରାତୃବର୍ଗଙ୍କ ଦ୍ୱାରା ପରି-ବେଷ୍ଟିତ ରାଜା ମଧ୍ୟ ସେହିପରି ବିନାଶ କରାଯାଇ ପାରନ୍ତି ନାହିଁ । ୩୧ ।

ବଳିନା ସହ ଯୋଦ୍ଧବ୍ୟମିତି ନାସ୍ତି ନିଦର୍ଶନମ୍ ।
ପ୍ରତିବାତଂ ନ ହି ଘନଃ କଦାଚିଦୁପସର୍ପତି । ୩୨ ।

'ବଳୀ ସହିତ ଯୁଦ୍ଧ କରିବା ଉଚିତ' ଏହାର କୌଣସି ନିଦ-ର୍ଶନ ନାହିଁ । କାରଣ ମେଘ କେବେହେବେ ପବନର ପ୍ରତିକୂଳରେ ଗତି କରେ ନାହିଁ । ୩୨ ।

ଜମଦଗ୍ନେଃ ସୁତସ୍ୟେବ ସର୍ବଃ ସର୍ବତ୍ର ସର୍ବଦା ।
ଅନେକଯୁଦ୍ଧଜୟିନଃ ପ୍ରତାପାଦେବ ଭଜ୍ୟତେ । ୩୩ ।

ଜମଦଗ୍ନିଙ୍କ ପୁତ୍ର ପରଶୁରାମଙ୍କ ପରି ଅନେକ ଯୁଦ୍ଧରେ ଜୟଲାଭ କରିଥିବା ରାଜାଙ୍କର ପ୍ରତାପରେ ହିଁ ସର୍ବତ୍ର ଓ ସର୍ବଦା ସମସ୍ତ ଶତ୍ରୁ ପଳାୟନ କରିଥାନ୍ତି । ୩୩ ।

ଅନେକ ଯୁଦ୍ଧବିଜୟୀ ସନ୍ଧାନଂ ଯସ୍ୟ ଗଚ୍ଛତି ।
ତତ୍ପ୍ରତାପେନ ତସ୍ୟାଶୁବଂଶମାୟାନ୍ତି ଶତ୍ରବଃ । ୩୪ ।

ଅନେକ ଯୁଦ୍ଧରେ ବିଜୟୀ ରାଜାଙ୍କ ସହିତ ସନ୍ଧି କରିଥିବା ରାଜା ମଧ୍ୟ ବିଜୟୀ ରାଜାଙ୍କ ପ୍ରତାପରୁ ଶୀଘ୍ର ନିଜର ଶତ୍ରୁମାନଙ୍କୁ ବଶ କରି ନେଇଥାନ୍ତି । ୩୪ ।

ତେଣୁ ବହୁଗୁଣସମନ୍ୱିତ ରାଜାଙ୍କ (ରାଜହଂସ ହିରଣ୍ୟଗର୍ଭ) ସହିତ ସନ୍ଧି କରିବା ଉଚିତ ।"

ଚକ୍ରବାକ କହିଲା, "ହେ ଗୁପ୍ତଚର, ସବୁ ଅବଗତ ହେଲି । ଯାଅ ! ପୁନର୍ବାର ଆସିବ ।"

ଏହାପରେ ରାଜା ହିରଣ୍ୟଗର୍ଭ ଚକ୍ରବାକକୁ ପଚାରିଲେ, "ମନ୍ତ୍ରୀ, କେଉଁ କେଉଁ ରାଜାଙ୍କ ସଙ୍ଗେ ସନ୍ଧି କରିବା ଅନୁଚିତ, ସେ କଥା ଶୁଣିବାକୁ ମୋର ଇଚ୍ଛା ।"

ମନ୍ତ୍ରୀ କହିଲା, "ମହାରାଜ ! କହୁଛି ଶୁଣନ୍ତୁ—

ବାଲୋ, ବୃଦ୍ଧୋ, ଦୀର୍ଘରୋଗୀ, ତଥା ଜ୍ଞାତିବହିଷ୍କୃତଃ ।
ଭୀରୁକୋ, ଭୀରୁକଜନୋ, ଲୁବ୍ଧୋ, ଲୁବ୍ଧଜନସ୍ତଥା । ୩୫ ।
ବିରକ୍ତପ୍ରକୃତିଶ୍ଚୈବ, ବିଷୟେଷ୍ୱତିସକ୍ତିମାନ୍ ।
ଅନେକଚିତ୍ତମନ୍ତ୍ରସ୍ତୁ, ଦେବବ୍ରାହ୍ମଣନିନ୍ଦକଃ । ୩୬ ।
ଦୈବୋପହତକଶ୍ଚୈବ, ତଥା ଦୈବପରାୟଣଃ ।
ଦୁର୍ଭିକ୍ଷବ୍ୟସନୋପେତୋ, ବଳବ୍ୟସନସଙ୍କୁଳଃ । ୩୭ ।
ଅଦେଶସ୍ଥୋ, ବହୁରିପୁର୍ଯୁକ୍ତଃ କାଳେନ ଯଶ୍ଚ ନ ।
ସତ୍ୟଧର୍ମବ୍ୟପେତଶ୍ଚ ବିଂଶତିଃ ପୁରୁଷା ଅମୀ । ୩୮ ।

ବାଳକ, ବୃଦ୍ଧ, ଚିରରୋଗୀ, ଜ୍ଞାତିମାନଙ୍କଦ୍ୱାରା ବହିଷ୍କୃତ, ଭୟାତୁର, ଭୀରୁସୈନ୍ୟସେବିତ, ଲୋଭୀ, ଲୋଭୀସେବକ ସେବିତ, ଯାହାପ୍ରତି ପ୍ରଜା ଓ କର୍ମଚାରୀମାନେ ବିରକ୍ତ, ଯେ ବିଷୟାସକ୍ତ, ଅସ୍ଥିରମନା, ଯିଏ ଦେବତା ଓ ବ୍ରାହ୍ମଣମାନଙ୍କର ନିନ୍ଦାକରେ, ଯାହା ପ୍ରତି ଦୈବ ପ୍ରତିକୂଳ, ଯେ ଦୈବ ନିର୍ଭରଶୀଳ, ଯିଏ ଦୁର୍ଭିକ୍ଷ ବିପଦରେ ପତିତ, ଯାହାର ସେନା ବିପଦ୍‌ଗ୍ରସ୍ତ, ଯିଏ ଅଦେଶରେ ବାସ କରୁଥାଏ, ଯାହାର ବହୁ ଶତ୍ରୁ ଥାଆନ୍ତି, ଯିଏ ସମୟ ଅନୁସାରେ କାର୍ଯ୍ୟ ନ କରେ, ଯିଏ ସତ୍ୟ ଧର୍ମରୁ ବିଚ୍ୟୁତ—ଏହି କୋଡ଼ିଏ ଶ୍ରେଣୀର ରାଜା ସନ୍ଧି କରିବାର ଯୋଗ୍ୟ ନୁହନ୍ତି । ୩୫-୩୮ ।

ଏତୈଃ ସନ୍ଧିଂ ନ କୁର୍ବୀତ ବିଗୃହ୍ଣୀୟାତ୍ତୁ କେବଳମ୍ ।
ଏତେ ବିଗୃହ୍ୟମାଣା ହି କ୍ଷିପ୍ରଂ ଯାନ୍ତି ରିପୋର୍ବଶମ୍ । ୩୯ ।

ଏମାନଙ୍କ ସହିତ ସନ୍ଧି ନ କରି କେବଳ ଯୁଦ୍ଧ କରିବା ଉଚିତ; କାରଣ ଏମାନେ ଯୁଦ୍ଧ କଲାମାତ୍ରେ ଅତିଶୀଘ୍ର ଶତ୍ରୁର ବଶୀଭୂତ ହୋଇଯାନ୍ତି । ୩୯ ।

ବାଳସ୍ୟାଽଲ୍ପପ୍ରଭାବତ୍ୱାନ୍ନ ଲୋକୋ ଯୋଦ୍ଧୁମିଚ୍ଛତି ।
ଯୁଦ୍ଧାଽଯୁଦ୍ଧଫଳଂ ଯସ୍ମାଦ୍ ଜ୍ଞାତୁଂ ଶକ୍ତୋ ନ ବାଳିଶଃ । ୪୦ ।

ରାଜା ଯଦି ବାଳକ ହୋଇଥାଏ ତାର ପ୍ରଭାବ ଅଳ୍ପ ହୋଇ-ଥିବାରୁ ଲୋକେ (ମନ୍ତ୍ରୀ, ସେନା ଆଦି) ତାହାପାଇଁ ଯୁଦ୍ଧ କରିବାକୁ ଇଚ୍ଛା କରନ୍ତି ନାହିଁ । ଆଉ ମଧ୍ୟ ଯୁଦ୍ଧ ବା ଅଯୁଦ୍ଧର ପରିଣତି ବୁଝିବାକୁ ବାଳକର ତଥା ମୂର୍ଖର ଶକ୍ତି ନ ଥାଏ । ୪୦ ।

ଉତ୍ସାହଶକ୍ତିହୀନତ୍ୱାଦ୍ ବୃଦ୍ଧୋ ଦୀର୍ଘାମୟସ୍ତଥା ।
ସ୍ୱୈରେବ ପରିଭୂୟେତେ ଦ୍ୱାବପ୍ୟେତାବସଂଶୟମ୍ । ୪୧ ।

ରାଜା ଯଦି ବୃଦ୍ଧ ହୋଇଥାଏ ଅଥବା ଚିରରୋଗୀ ହୋଇଥାଏ ତେବେ ଉତ୍ସାହ ଶକ୍ତି ଅଭାବରୁ ଏ ଦୁହେଁ ସ୍ୱତଃ ପରାଜୟ ସ୍ୱୀକାର କରିଥାନ୍ତି; ଏଥିରେ ସନ୍ଦେହ ନାହିଁ । ୪୧ ।

ସୁଖୋଚ୍ଛେଦ୍ୟୋ ହି ଭବତି ସର୍ବଜ୍ଞାତିବହିଷ୍କୃତଃ ।
ତ ଏବୈନଂ ବିନଘ୍ନନ୍ତି ଜ୍ଞାତୟସ୍ତ୍ୱାତ୍ମସାତ୍କୃତାଃ । ୪୨ ।

ନିଜର ଜ୍ଞାତିମାନଙ୍କଦ୍ୱାରା ବିତାଡ଼ିତ ରାଜାଙ୍କୁ ଅକ୍ଳେଶରେ ପରାଜିତ କରି ହୁଏ, କାରଣ ତା ପକ୍ଷରେ ନିଆଯାଇଥିବା ଜ୍ଞାତି ବନ୍ଧୁମାନେ ହିଁ ତାର ବିନାଶ ସାଧନ କରିଥାନ୍ତି । ୪୨ ।

ଭୀରୁର୍ଯୁଦ୍ଧପରିତ୍ୟାଗାତ୍ ସ୍ୱୟମେବ ପ୍ରଣଶ୍ୟତି ।
ତଥୈବ ଭୀରୁପୁରୁଷଃ ସଂଗ୍ରାମେ ତୈର୍ବିମୁଚ୍ୟତେ । ୪୩ ।

ଭୀରୁ ରାଜା ଯୁଦ୍ଧଭୂମି ପରିତ୍ୟାଗ କରି ଆପେ ଆପେ ବିନଷ୍ଟ ହୁଏ; ସେହିପରି ରାଜାଙ୍କର ସେନା ଆଦି ଭୀରୁ ହୋଇଥିଲେ ସେମାନେ ଯୁଦ୍ଧବେଳେ ରାଜାଙ୍କୁ ତ୍ୟାଗ କରି ପଳାଇଯାନ୍ତି । ୪୩ ।

ଲୁବ୍‌ଧସ୍ୟାଽସଂବିଭାଗିତ୍ୱାନ୍ନ ଯୁଧ୍ୟନ୍ତେଽନୁଜୀବିନଃ ।
ଲୁବ୍‌ଧାଽନୁଜୀବୀ ତୈରେବ ଦାନଭିନ୍ନୈର୍ନିହନ୍ୟତେ । ୪୪ ।

ଲୋଭୀ ରାଜା ନିଜର ଅନୁଚର (ମନ୍ତ୍ରୀ, ସେନା) ମାନଙ୍କୁ ଉଚିତରୂପେ ସେମାନଙ୍କର ଅଂଶ ନ ଦେଉଥିବାରୁ ସେମାନେ ତାହା ପାଇଁ ଯୁଦ୍ଧ କରନ୍ତି ନାହିଁ । ପୁଣି ଯେଉଁ ରାଜାଙ୍କର ଅନୁଚରମାନେ ଲୋଭୀ ହୋଇଥାନ୍ତି, ଶତ୍ରୁଠାରୁ ଧନ ପାଇ ସେହିମାନେହିଁ ରାଜାଙ୍କଠାରୁ ଭିନ୍ନ ହୋଇ ତାଙ୍କୁ ବିନାଶ କରିଥାନ୍ତି । ୪୪ ।

ସନ୍ତ୍ୟଜ୍ୟତେ ପ୍ରକୃତିଭିର୍ବିରକ୍ତପ୍ରକୃତିର୍ଯୁଧି ।
ସୁଖାଽଭିଯୋଜ୍ୟୋ ଭବତି ବିଷୟେଷ୍ୱତିସକ୍ତିମାନ୍ । ୪୫ ।

ଯେଉଁ ରାଜାଙ୍କ ଉପରେ ତାଙ୍କର କର୍ମଚାରୀବର୍ଗ ଓ ପ୍ରଜାମାନେ ଅସନ୍ତୁଷ୍ଟ ଥାନ୍ତି, ଯୁଦ୍ଧବେଳେ ସେମାନେ ତାଙ୍କୁ ପରିତ୍ୟାଗ କରନ୍ତି । ସେହିପରି ଯେଉଁ ରାଜା ଅତିମାତ୍ରାରେ ବିଷୟସୁଖରେ ଲିପ୍ତ, ସେ ସହଜରେ ପରାଜିତ ହୋଇଥାନ୍ତି । ୪୫ ।

ଅନେକଚିତ୍ତମନ୍ତ୍ରସ୍ତୁ ଦ୍ୱେଷ୍ୟୋ ଭବତି ମନ୍ତ୍ରିଣାମ୍
ଅନବସ୍ଥିତଚିତ୍ତତ୍ୱାତ୍ କାର୍ଯ୍ୟତଃ ସ ଉପେକ୍ଷ୍ୟତେ । ୪୬ ।

ଯେଉଁ ରାଜାଙ୍କର ଚିତ୍ତ ଚଞ୍ଚଳ ଓ ମନ୍ତ୍ରଣା ଦେବାରେ ଯିଏ ଅନିଶ୍ଚିତ, ସେ ମନ୍ତ୍ରୀମାନଙ୍କର ଶତ୍ରୁ ହୁଅନ୍ତି । ତାଙ୍କ ଅବ୍ୟବସ୍ଥିତ ଚିତ୍ତ ହେତୁରୁ କାର୍ଯ୍ୟକ୍ଷେତ୍ରରେ ସମସ୍ତେ (ତାଙ୍କ ମନ୍ତ୍ରୀ ପ୍ରଭୃତି) ତାଙ୍କୁ ଉପେକ୍ଷା କରିଥାନ୍ତି । ୪୬ ।

ସଦାଽଧର୍ମବଳୀୟସ୍ତ୍ୱାଦ୍ଦେବବ୍ରାହ୍ମଣନିନ୍ଦକଃ
ବିଶୀର୍ଯ୍ୟତେ ସ୍ୱୟଂ ହ୍ୟେଷ ଦୈବୋପହତକସ୍ତଥା । ୪୭ ।

ଯେଉଁ ରାଜା ସର୍ବଦା ଅଧର୍ମ-ବଳରେ ବଳୀୟାନ୍ ଓ ଯିଏ ଦେବତା-ବ୍ରାହ୍ମଣଙ୍କର ନିନ୍ଦା କରନ୍ତି, ସେ ଆପେ ଆପେ ନଷ୍ଟ ହୁଅନ୍ତି । ସେହିପରି ଯେଉଁ ରାଜାଙ୍କ ପ୍ରତି ଦୈବ ପ୍ରତିକୂଳ ସେ ମଧ୍ୟ ଆପେ ଆପେ ନଷ୍ଟ ହୁଅନ୍ତି । ୪୭ ।

ସମ୍ପତ୍ତେଶ୍ଚ ବିପତ୍ତେଶ୍ଚ ଦୈବମେବ ହି କାରଣମ୍ ।
ଇତି ଦୈବପରୋ ଧ୍ୟାୟନ୍ନାତ୍ମନା ନ ବିଚେଷ୍ଟତେ । ୪୮ ।

'ଦୈବହିଁ ସମ୍ପତ୍ତି ଦେଇଥାଏ, ପୁଣି ବିପତ୍ତି ଦେଇଥାଏ ।' ଏହିପରି ଚିନ୍ତାକରି ଭାଗ୍ୟବାଦୀ ରାଜା ନିଜେ କୌଣସି ପ୍ରଚେଷ୍ଟା କରନ୍ତି ନାହିଁ । ୪୮ ।

ଦୁର୍ଭିକ୍ଷବ୍ୟସନୀ ଚୈବ ସ୍ୱୟମେବ ବିଷୀଦତି ।
ବଳବ୍ୟସନସକ୍ତସ୍ୟ ଯୋଦ୍ଧୁଂ ଶକ୍ତିର୍ନ ଜାୟତେ । ୪୯ ।

ଦୁର୍ଭିକ୍ଷ-ବିପଦଗ୍ରସ୍ତ ରାଜା ନିଜେ ବ୍ୟାକୁଳ ହୋଇଥାନ୍ତି; ଯେଉଁ ରାଜାଙ୍କର ସେନା ବିପଦଗ୍ରସ୍ତ, ତାଙ୍କର ଯୁଦ୍ଧ କରିବାର ଶକ୍ତି ନ ଥାଏ । ୪୯ ।

ଅଦେଶସ୍ଥୋ ହି ରିପୁଣା ସ୍ୱଳ୍ପକେନାଽପି ହନ୍ୟତେ ।
ଗ୍ରାହୋଽଲ୍ପୀୟାନପି ଜଳେ ଗଜେନ୍ଦ୍ରମବକର୍ଷତି । ୫୦ ।

ଅସ୍ଥାନରେ ପଡିଥିବା ରାଜା ସାମାନ୍ୟ ଶତ୍ରୁଦ୍ୱାରା ମଧ୍ୟ ବିନଷ୍ଟ ହୁଅନ୍ତି । ଜଳରେ ପଡିଥିବା ବିଶାଳ ହସ୍ତୀକୁ ମଧ୍ୟ ହୀନବଳ କୁମ୍ଭୀର ପରାସ୍ତ କରିପାରେ । ୫୦ ।

ବହୁଶତ୍ରୁସ୍ତୁ ସନ୍ତ୍ରସ୍ତଃ ଶ୍ୟେନମଧ୍ୟେ କପୋତବତ୍ ।
ଯେନୈବ ଗଚ୍ଛତି ପଥା ତେନୈବାଽଶୁ ବିପଦ୍ୟତେ । ୫୧ ।

ଶ୍ୟେନ (ସଞ୍ଚାଣ) ମାନଙ୍କ ଘେର ଭିତରେ ପଡ଼ିଥିବା କପୋତ ପରି ବହୁ ଶତ୍ରୁବିଶିଷ୍ଟ ରାଜା ଯେଉଁ ବାଟରେ ଯାଆନ୍ତି, ସେ ବାଟରେ ଶୀଘ୍ର ବିପଦଗ୍ରସ୍ତ ହୁଅନ୍ତି । ୫୧ ।

ଅକାଳଯୁକ୍ତସୈନ୍ୟସ୍ତୁ ହନ୍ୟତେ କାଳଯୋଧିନା ।
କୌଶିକେନ ହତଜ୍ୟୋତି ର୍ନିଶୀଥ ଇବ ବାୟସଃ । ୫୨ ।

ଗଭୀର ରାତିରେ ବାୟସର ଚକ୍ଷୁର ଜ୍ୟୋତି ନ ଥିବାରୁ ସେ ଯେପରି ପେଚକଦ୍ୱାରା ନିହତ ହୁଏ, ସେହିପରି ଯେଉଁ ରାଜା ଉପଯୁକ୍ତ ଅବସର ନ ଦେଖି ସୈନ୍ୟ ସହ ଯୁଦ୍ଧ କରିବାକୁ ଯାଆନ୍ତି, ସେ ଅବସର ବୁଝି ଯୁଦ୍ଧ କରୁଥିବା ସୈନ୍ୟଙ୍କଦ୍ୱାରା ନିହତ ହୁଅନ୍ତି । ୫୨ ।

ସତ୍ୟଧର୍ମବ୍ୟପେତେନ ସନ୍ଦଧ୍ୟାନ୍ନ କଦାଚନ ।
ସ ସନ୍ଧିତୋଽପ୍ୟସାଧୁତ୍ୱାଦଚିରାଦ୍ ଯାତି ବିକ୍ରିୟାମ୍ । ୫୩ ।

ଅସତ୍ୟବାଦୀ ଓ ଧର୍ମହୀନ ରାଜାଙ୍କ ସହିତ ସନ୍ଧି କରିବା କଦାପି ଉଚିତ ନୁହେଁ; କାରଣ ସନ୍ଧି କରିଥିଲେହେଁ ଅସାଧୁ ସ୍ୱଭାବବଶତଃ ସେ ଅଳ୍ପକାଳ ମଧ୍ୟରେ ସନ୍ଧିର ସର୍ତ୍ତ ଲଙ୍ଘନ କରନ୍ତି । ୫୩ ।

ଆହୁରି ଗୋଟିଏ କଥା କହୁଛୁ ।

ରାଜମାନଙ୍କର ଛଅଟି ଗୁଣ ଅଛି; ଯଥା—ସନ୍ଧି, ଯୁଦ୍ଧ, ଶତ୍ରୁପ୍ରତି ଅଭିଯାନ (ଯାନ), ଦୁର୍ଗାଦିରେ ଅବସ୍ଥାନପୂର୍ବକ ସୁଯୋଗର ଅପେକ୍ଷା (ଆସନ), ବଳବାନ୍ ବ୍ୟକ୍ତିର ଆଶ୍ରୟ ଗ୍ରହଣ (ସଂଶ୍ରୟ) ଓ ଦ୍ୱୈଧୀ ନୀତି ଗ୍ରହଣ । ମନ୍ତ୍ରଣାର ପାଞ୍ଚୋଟି ଅଙ୍ଗ ଅଛି; ଯଥା—କାର୍ଯ୍ୟାରମ୍ଭର ଉପାୟ, ସହାୟକ ଲୋକ ଓ ଦ୍ରବ୍ୟର ସଂଗ୍ରହ, ସ୍ଥାନ ଓ ସମୟର ବିଭାଗ ଅନୁସାରେ କର୍ତ୍ତବ୍ୟ ନିରୂପଣ, ବିପଦର ପ୍ରତୀକାର ଓ କାର୍ଯ୍ୟ ସିଦ୍ଧି । ସାମ, ଦାନ, ଭେଦ ଓ ଦଣ୍ଡ ଏହି ଚାରୋଟି ହେଉଛି ଉପାୟ । ଶକ୍ତି ତିନି ପ୍ରକାର—ଉତ୍ସାହଶକ୍ତି, ମନ୍ତ୍ରଶକ୍ତି ଓ ପ୍ରଭୁଶକ୍ତି । ମହାନ୍ ଲୋକେ ଏହି ସବୁ ବିଷୟର କରି ସର୍ବଦା ବିଜୟଲାଭର ଅଭିଳାଷ କରିଥାନ୍ତି ।

ଯା ହି ପ୍ରାଣପରିତ୍ୟାଗମୂଲ୍ୟେନାଽପି ନ ଲଭ୍ୟତେ ।
ସା ଶ୍ରୀର୍ନୀତିବିଦଂ ପଶ୍ୟ ଚଞ୍ଚଳାଽପି ପ୍ରଧାବତି । ୫୪ ।

ଯେଉଁ ଲକ୍ଷ୍ମୀଙ୍କୁ ପ୍ରାଣତ୍ୟାଗ ରୂପକ ମୂଲ୍ୟରେ ମଧ୍ୟ ଲାଭ କରି-ଯାଇ ନ ପାରେ, ସେହି ଲକ୍ଷ୍ମୀ ଅସ୍ଥିର ହେଲେହେଁ ନୀତିଜ୍ଞ ରାଜାଙ୍କ ନିକଟକୁ ନିଜେ ଧାଇଁ ଯାଆନ୍ତି । ୫୪ । କଥିତ ଅଛି—

ବିତ୍ତଂ ସଦା ଯସ୍ୟ ସମଂ ବିଭକ୍ତଂ,
ଗୂଢ଼ଶ୍ଚରଃ ସୁନିଭୃତଶ୍ଚ ମନ୍ତ୍ରଃ ।
ନ ଚାଽପ୍ରିୟଂ ପ୍ରାଣିଷୁ ଯୋ ବ୍ରବୀତି
ସ ସାଗରାନ୍ତାଂ ପୃଥିବୀଂ ପ୍ରଶାସ୍ତି । ୫୫ ।

ଯେଉଁ ରାଜା ନିଜର ସମ୍ପତ୍ତିକୁ ଅନୁଚରଙ୍କ ମଧ୍ୟରେ ସମାନ ଭାବରେ ବଣ୍ଟନ କରିଦିଅନ୍ତି, ଯାହାଙ୍କର ଗୁପ୍ତଚର ଓ ମନ୍ତ୍ରଣା ଅତ୍ୟନ୍ତ ଗୋପନ ଥାଏ, ଯିଏ କାହାରିକୁ କଠୋର ବାକ୍ୟ କହନ୍ତି ନାହିଁ, ସେହି ରାଜା ଆସମୁଦ୍ର ପୃଥିବୀକୁ ଶାସନ କରନ୍ତି । ୫୫ ।

କିନ୍ତୁ ମହାରାଜ ! ଯଦ୍ୟପି ମହାମନ୍ତ୍ରୀ ଗୃଧ୍ର ସନ୍ଧି ପ୍ରସ୍ତାବ ଉପସ୍ଥାପିତ କରିଛନ୍ତି, ତଥାପି ସେ ରାଜା (ଚିତ୍ରବର୍ଣ୍ଣ) ବିଜୟ ଗର୍ବରେ ତାହା ଗ୍ରହଣ କରୁ ନାହାନ୍ତି । ତେଣୁ ଏହାହିଁ କରାଯାଉ । ସିଂହଳଦ୍ୱୀପର ମହାବଳ ନାମକ ସାରସରାଜା ଆମ୍ଭର ମିତ୍ର ଅଟନ୍ତି । ତାହାଙ୍କୁ ଜମ୍ବୁଦ୍ୱୀପପ୍ରତି କୋପାନ୍ୱିତ କରି ଦିଆଯାଉ ।

ସୁଗୁପ୍ତିମାଧାୟ, ସୁସଂହତେନ
ବଳେନ ବୀରୋ ବିଚରନ୍ନରାତିମ୍ ।
ସନ୍ତାପୟେଦ୍ ଯେନ ସମଂ ସୁତପ୍ତ-
ସ୍ତପ୍ତେନ ସନ୍ଧାନମୁପୈତି ତପ୍ତଃ । ୫୬ ।

ବଳବାନ୍ ରାଜା ଅତି ଗୋପନରେ ପରସ୍ପର ଅନୁରକ୍ତ ସୈନ୍ୟଦଳ ସହିତ ଇତସ୍ତତଃ ଭ୍ରମଣ କରି ଶତ୍ରୁକୁ ଉତ୍ପୀଡ଼ିତ କରିବା ଉଚିତ, ଯେପରି କି ସେ ସେହି ରାଜାଙ୍କ ପରି ଉତ୍ପୀଡ଼ିତ ହେବ । ତାହାହେଲେ ସେ ସନ୍ଧି କରିବ, କାରଣ ଦୁଇ ଖଣ୍ଡ ଲୌହ ସମାନ ଭାବରେ ଉତ୍ତପ୍ତ ହେଲେ ପରସ୍ପର ମିଳିଥାନ୍ତି । ୫୬ ।

'ତାହାହିଁ କରାଯାଉ' ବୋଲି କହି ରାଜା ବିଚିତ୍ର ନାମକ ଏକ ବକ ହସ୍ତରେ ଖଣ୍ଡିଏ ଗୁପ୍ତ ପତ୍ର ଦେଇ ତାକୁ ସିଂହଳ ଦ୍ୱୀପକୁ ପଠାଇଦେଲେ ।

ଏହି ସମୟରେ ଗୁପ୍ତଚର ପୁଣି ଆସି ଜଣାଇଲା, "ମହାରାଜ, ସେଠାର ପ୍ରସ୍ତାବ ଶୁଣନ୍ତୁ । ଗୃଧ୍ର ତାଙ୍କ ରାଜାଙ୍କୁ କହିଲା—ପ୍ରଭୁ, ମେଘବର୍ଣ୍ଣ ସେଠାରେ ଦୀର୍ଘକାଳ ରହିଥିଲା । ରାଜା ହିରଣ୍ୟଗର୍ଭ ସନ୍ଧି କରିବାର ଯୋଗ୍ୟ କିନା ସେ ଜାଣିଥିବ । ରାଜା ଚିତ୍ରବର୍ଣ୍ଣ ମେଘବର୍ଣ୍ଣ ବାୟସକୁ ଡକାଇ ପଚାରିଲେ, 'ହେ ବାୟସ, ସେ ରାଜା ହିରଣ୍ୟଗର୍ଭ କିପରି ଲୋକ ? ତାଙ୍କର ମନ୍ତ୍ରୀ ଚକ୍ରବାକ ବା କିପରି ଲୋକ ?' ବାୟସ କହିଲା, 'ରାଜା ହିରଣ୍ୟଗର୍ଭ ହେଉଛନ୍ତି ଯୁଧିଷ୍ଠିରଙ୍କ ଭଳି ଉଦାରହୃଦୟ ଓ ସତ୍ୟବାଦୀ । ଚକ୍ରବାକ ପରି ମନ୍ତ୍ରୀ ଅନ୍ୟ କୌଣସିଠାରେ ଦେଖାନାହିଁ ।' ରାଜା କହିଲେ—ଯଦି ଏପରି କଥା, ତେବେ ତୁମେ କାହିଁକି ତାଙ୍କପ୍ରତି ବିଶ୍ୱାସଘାତକତା କଲ ? ମେଘବର୍ଣ୍ଣ ହସି ହସି କହିଲା—

ବିଶ୍ୱାସପ୍ରତିପନ୍ନାନାଂ ବଞ୍ଚନେ କା ବିଦଗ୍ଧତା ?
ଅଙ୍କମାରୁହ୍ୟ ସୁପ୍ତଂ ହି ହତ୍ୱା କିଂ ନାମ ପୌରୁଷମ୍ । ୫୭ ।

ବିଶ୍ୱାସ କରି ଉପଗତ ହୋଇଥିବା ବ୍ୟକ୍ତିକୁ ପ୍ରତାରଣା କରିବାରେ କି ଚତୁରତା ଅଛି ? କୋଳକୁ ଆଶ୍ରୟ କରି ଶୋଇ ପଡ଼ିଥିବା ଲୋକକୁ ବଧ କରିବାରେ କି ପରାକ୍ରମ ଅଛି ? ୫୭ ।

ପ୍ରଭୁ, ଶୁଣନ୍ତୁ । ସେହି ମନ୍ତ୍ରୀ (ଚକ୍ରବାକ)ଙ୍କ ସହିତ ପ୍ରଥମ ସାକ୍ଷାତରେହିଁ ମୁଁ ତାଙ୍କୁ ଚିହ୍ନି ପାରିଥିଲି; କିନ୍ତୁ ରାଜା (ହିରଣ୍ୟଗର୍ଭ) ହେଉଛନ୍ତି ଉଦାରମନା । ମୁଁ ତାଙ୍କୁ ପ୍ରତାରିତ କଲି । କଥିତ ଅଛି—

ଆତ୍ମୌପମ୍ୟେନ ଯୋ ବେତ୍ତି ଦୁର୍ଜନଂ ସତ୍ୟବାଦିନମ୍ ।
ସ ତଥା ବଞ୍ଚ୍ୟତେ ଧୂର୍ତ୍ତୈର୍ବ୍ରାହ୍ମଣଶ୍ଛାଗତୋ ଯଥା । ୫୮ ।

ଯେଉଁ ଲୋକ ଦୁଷ୍ଟ ଲୋକକୁ ନିଜପରି ସତ୍ୟବାଦୀ ମନେ କରେ, ସେ ଧୂର୍ତ୍ତମାନଙ୍କଦ୍ୱାରା ବ୍ରାହ୍ମଣ ପ୍ରତାରିତ ହୋଇ ଛାଗକୁ ହରାଇଲାପରି ପ୍ରତାରିତ ହୁଏ ।

ରାଜା କହିଲେ, "ସେ କଥା କପରି ?"

ମେଘବର୍ଣ୍ଣ କହିଲା—

## କଥା-୯

ଗୌତମାରଣ୍ୟରେ ଜଣେ ବ୍ରାହ୍ମଣ ଗୋଟିଏ ଯଜ୍ଞର ଆୟୋଜନ କରୁଥିଲେ । ଯଜ୍ଞ ଉଦ୍ଦେଶ୍ୟରେ ସେ ଅନ୍ୟ କୌଣସି ଗ୍ରାମରୁ ଗୋଟିଏ ଛାଗ କିଣି କରି ତାହାକୁ କାନ୍ଧରେ ଧରି ଆସୁଥିଲେ । ତାହାଙ୍କୁ ତିନିଜଣ ଧୂର୍ତ୍ତ ଦେଖି ପାରିଲେ । 'ଯଦି କୌଣସି ଉପାୟରେ ଏହି ଛାଗଟିକୁ ନେଇ ପାରିବା, ତେବେ ଆମର ବୁଦ୍ଧିର ଉତ୍କର୍ଷ ଜଣା ପଡ଼ିବ ।' ଏହିପରି ବିଚାରକରି ସେ ତିନିହେଁ ପଥ ପ୍ରାନ୍ତରେ ଏକ ଏକ କ୍ରୋଶ ଅନ୍ତରରେ ଗୋଟିଏ ଗୋଟିଏ ବୃକ୍ଷମୂଳେ ବସି ବ୍ରାହ୍ମଣଙ୍କର ଆଗମନକୁ ଅପେକ୍ଷା କରି ରହିଲେ ।

ବ୍ରାହ୍ମଣ ଯାଉଥିବାବେଳେ ଜଣେ ଧୂର୍ତ୍ତ ଆସି ତାଙ୍କୁ କହିଲା, "ହେ ବ୍ରାହ୍ମଣ, ଗୋଟାଏ କୁକୁରକୁ କାହିଁକି କାନ୍ଧରେ ବୋହି ନେଉଛ ?" ବ୍ରାହ୍ମଣ କହିଲେ, "ଏ କୁକ୍କୁର ନୁହେଁ, ଯଜ୍ଞ ନିମନ୍ତେ ଛାଗଳ ।" ଏହାପରେ ଥିବା ଧୂର୍ତ୍ତ ମଧ୍ୟ ସେହିପରି କହିଲା । ତାହା ଶୁଣି ବ୍ରାହ୍ମଣ ଛାଗଟିକୁ କାନ୍ଧରୁ ଓହ୍ଲାଇ ତଳେ ରଖି ଟିକିଏ ଗୁହିଁ ଦେଲେ ଓ ପୁଣି କାନ୍ଧରେ ରଖି ସଂଶୟାକୁଳ ମନରେ ଚାଲିଲେ । ଯେହେତୁ—

ମନ୍ତର୍ଦ୍ଧୋଳାୟତେ ସତ୍ୟଂ ସତାମପି ଖଳୋକ୍ତିଭିଃ ।
ତାଭି ବିଶ୍ୱାସିତଶ୍ଚାସୌ ମ୍ରିୟତେ ଚିତ୍ରକର୍ଣ୍ଣବତ୍ । ୫୯ ।

ସାଧୁଲୋକମାନଙ୍କର ମନ ମଧ୍ୟ ଖଳ ଲୋକର କଥାରେ ଅବଶ୍ୟ ସନ୍ଦେହାକୁଳ ହୁଏ । ସେହି କଥାରେ ବିଶ୍ୱାସ କରି ସେ ଚିତ୍ରକର୍ଣ୍ଣ ନିହତ ହେଲାପରି ପ୍ରାଣ ହରାଏ । ୫୯ ।

ରାଜା କହିଲେ—ସେ ( ଚିତ୍ରକର୍ଣ୍ଣ ) କଥା କଅଣ ?"
ସେ (ମେଘବର୍ଣ୍ଣ) କହିଲା—

## କଥା-୧୦

କୌଣସି ଏକ ବନ ପ୍ରାନ୍ତରେ ମଦୋତ୍କଟ ନାମରେ ଗୋଟିଏ ସିଂହ ଥିଲା । ତାହାର ତିନିଜଣ ସେବକ ଥିଲେ—ଗୋଟିଏ କାକ, ଗୋଟିଏ ବ୍ୟାଘ୍ର ଓ ଗୋଟିଏ ଶୃଗାଳ । ଥରେ ସେମାନେ ଭ୍ରମଣ କରୁକରୁ ଦଳଭ୍ରଷ୍ଟ ଗୋଟିଏ ଉଷ୍ଟ୍ରକୁ ଦେଖି ପଚାରିଲେ—ତୁମେ କେଉଁଠାରୁ ଆସିଛ ? କଅଣ ବଣିକଦଳଙ୍କଠାରୁ ବିଚ୍ୟୁତ ହୋଇ ପଡ଼ିଛ ? ଉଷ୍ଟ୍ର ନିଜର ସମସ୍ତ ବୃତ୍ତାନ୍ତ କହିଲା । ତହୁଁ ସେମାନେ ତାହାକୁ ନେଇ ସିଂହ ନିକଟରେ ସମର୍ପଣ କଲେ । ସିଂହ ତାକୁ ଅଭୟ ଦେଇ ଚିତ୍ରକର୍ଣ୍ଣ ବୋଲି ତାର ନାମକରଣ କରି ପାଖରେ ରଖିଲା ।

ଏକ ସମୟରେ ବହୁଳ ବୃଷ୍ଟି ଓ ସିଂହର ଶାରୀରିକ ଅସୁସ୍ଥତା ହେତୁରୁ ସେମାନେ ଆହାର ଅଭାବରେ ଅସ୍ଥିର ହୋଇ ପଡ଼ିଲେ । ସେମାନେ ବିଚାର କଲେ, "ସ୍ୱାମୀ ସିଂହ ଯେପରି ଏହି ଚିତ୍ରକର୍ଣ୍ଣକୁ ବଧ କରନ୍ତି, ସେଥିର ଉପାୟ କରିବାକୁ ହେବ । କଣ୍ଟକଭୋଗୀ ଏହି ଉଷ୍ଟ୍ରରେ ଆମର କି ପ୍ରୟୋଜନ ଅଛି ?"

ବ୍ୟାଘ୍ର କହିଲା "ପ୍ରଭୁ ତାଙ୍କୁ ଅଭୟ ବାଣୀ ଶୁଣାଇ ଅନୁଗୃହୀତ କରିଅଛନ୍ତି । ତେଣୁ ସେ ତାଙ୍କୁ ବଧ କରିବା କପରି ସମ୍ଭବ ହୋଇପାରେ ?" କାକ କହିଲା—"ବର୍ତ୍ତମାନ ଆମ ପ୍ରଭୁ କ୍ଷୁଧାରେ ପୀଡ଼ିତ ହୋଇ ରହିଅଛନ୍ତି । ତେଣୁ ସେ ପାପକର୍ମ ମଧ୍ୟ କରିପାରିବେ । କାରଣ—

ତ୍ୟଜେତ୍ କ୍ଷୁଧାର୍ତ୍ତା ମହିଳା ସ୍ୱପୁତ୍ରଂ
ଖାଦେତ୍ କ୍ଷୁଧାର୍ତ୍ତା ଭୁଜଗୀ ସ୍ୱମଣ୍ଡମ୍ ।
ବୁଭୁକ୍ଷିତଃ କିଂ ନ କରୋତି ପାପଂ
କ୍ଷୀଣା ନରା ନିଷ୍କରୁଣା ଭବନ୍ତି । ୭୦ ।

କ୍ଷୁଧାରେ କାତର ହେଲେ ସ୍ତ୍ରୀ ନିଜର ପୁତ୍ରକୁ ମଧ୍ୟ ତ୍ୟାଗ କରିଥାଏ । କ୍ଷୁଧାର୍ତ୍ତ ଭୁଜଙ୍ଗୀ ନିଜର ଡିମ୍ବକୁ ମଧ୍ୟ ଖାଇଯାଏ । ବୁଭୁକ୍ଷାପୀଡ଼ିତ ଲୋକ କି ପାପ କରି ନ ପାରେ ? କାରଣ (କ୍ଷୁଧାରେ) କାତର ପ୍ରାଣୀ ନିର୍ଦ୍ଦୟ ହୋଇଯାଏ । ୭୦ । ପୁଣି—

ମତ୍ତଃ, ପ୍ରମତ୍ତଶ୍ଚୋନ୍ମତ୍ତଃ, ଶ୍ରାନ୍ତଃ, କ୍ରୁଦ୍ଧୋ ବୁଭୁକ୍ଷିତଃ ।
ଲୁବ୍ଧୋ ଭୀରୁସ୍ତ୍ୱରାଯୁକ୍ତଃ କାମୁକଶ୍ଚ ନ ଧର୍ମବିତ୍ । ୭୧ ।

ଗର୍ବୋନ୍ମତ୍ତ, ଅସାବଧାନ, ବିକୃତମସ୍ତିଷ୍କ, ଶ୍ରମପୀଡ଼ିତ, କ୍ରୁଦ୍ଧ, କ୍ଷୁଧାପୀଡ଼ିତ, ଲୋଭୀ, ଭୟାଳୁ, ସହସାକାର୍ଯ୍ୟକାରକ, କାମୁକ—ଏମାନେ କଦାପି ଧର୍ମଜ୍ଞ ହୋଇ ନ ପାରନ୍ତି ।" ୭୧ ।

ଏହିପରି ବିଚାର କରି ସମସ୍ତେ ସିଂହ ନିକଟକୁ ଗଲେ । ସିଂହ ପଚାରିଲା, "ଭୋଜନ ପାଇଁ କିଛି ମିଳିଲା କି ?" ସେମାନେ ଉତ୍ତର କଲେ, "ବହୁତ ଯତ୍ନ କଲେ ହେଁ କିଛି ମିଳିଲା ନାହିଁ ।" ସିଂହ କହିଲା, "ତାହାହେଲେ ବର୍ତ୍ତମାନ ପ୍ରାଣରକ୍ଷାର ଉପାୟ କଅଣ ?"

କାକ କହିଲା, "ପ୍ରଭୁ, ନିଜର ଅଧୀନରେ ରହିଥିବା ଆଶ୍ରିତକୁ ପରିତ୍ୟାଗ କରିବା ହେତୁ ଏହି ସର୍ବନାଶ ଉପସ୍ଥିତ ହୋଇଅଛି ।" ସିଂହ କହିଲା, 'ଏଠାରେ କେଉଁ ଆଶ୍ରିତ ଆମ ନିଜର ଅଧୀନ ହୋଇ ରହିଛି ?' କାକ ସିଂହର କାନରେ ଚୁପ୍‌ଚାପ୍ କରି କହିଲା, 'ଶଙ୍କୁକର୍ଣ୍ଣ' । ସିଂହ ଭୂମିସ୍ପର୍ଶ କରି, କାନକୁ ସ୍ପର୍ଶ କରି କହିଲା, "ଏହାକୁ ଅଭୟ ଦେଇ ମୁଁ ଏଠାରେ ରଖିଛି । ତେଣୁ ସେକଥା କିପରି ସମ୍ଭବ ? କାରଣ—

ନ ଭୂପ୍ରଦାନଂ, ନ ସୁବର୍ଣ୍ଣଦାନମ୍,
ନ ଗୋପ୍ରଦାନଂ, ନ ତଥାଽନ୍ନଦାନମ୍ ।
ଯଥା ବଦନ୍ତୀହ ମହାପ୍ରଦାନଂ
ସର୍ବେଷୁ ଦାନେଷ୍ୱଭୟପ୍ରଦାନମ୍ । ୬୨ ।

ସବୁଦାନ ମଧ୍ୟରେ ଅଭୟ ଦାନକୁ ଯେପରି ପ୍ରଧାନ ଦାନ ବୋଲି କୁହାଯାଏ ଭୂମିଦାନ, ସୁବର୍ଣ୍ଣଦାନ, ଗୋଦାନ ତଥା ଅନ୍ନ ଦାନକୁ ସେତେ ବଡ଼ ମହାଦାନ ବୋଲି କୁହାଯାଏ ନାହିଁ । ପୁଣି—

ସର୍ବକାମସମୃଦ୍ଧସ୍ୟ ଅଶ୍ୱମେଧସ୍ୟ ଯତ୍ ଫଳମ୍ ।
ତତ୍‌ଫଳଂ ଲଭତେ ସମ୍ୟଗ୍‌ରକ୍ଷିତେ ଶରଣାଽଗତେ । ୬୩ ।

ସର୍ବକାମନା ପୂରଣକାରୀ ଅଶ୍ୱମେଧ ଯଜ୍ଞ କଲେ ଯେଉଁ ଫଳ ମିଳେ, ଶରଣାଗତ ବ୍ୟକ୍ତିକୁ ରକ୍ଷା କରିବା ଦ୍ୱାରା ସେହି ଫଳ ମିଳେ । ୬୩ ।"

କାକ କହିଲା, "ସ୍ୱୟଂ ପ୍ରଭୁ ତାକୁ ବଧ କରିବେ ନାହିଁ, କିନ୍ତୁ ଆମ୍ଭେମାନେ ଏପରି କରିବୁ ଯେ ସେ ନିଜର ଶରୀରକୁ ସମର୍ପଣ କରିଦେବ ।"

ଏହା ଶୁଣି ସିଂହ ନୀରବ ହୋଇ ରହିଲା ।

ତତ୍ପରେ କାକ ସୁଯୋଗ ପାଇ କୌଶଳରେ ସମସ୍ତଙ୍କୁ ଆଣି ସିଂହ ପାଖରେ ପହଞ୍ଚିଲା । କାକ କହିଲା, "ମହାରାଜ, ଚେଷ୍ଟା କରି ମଧ୍ୟ କୌଣସି ଆହାର ମିଳିଲା ନାହିଁ । ଆପଣ ଦୀର୍ଘ ଉପବାସରେ କ୍ଳେଶ ଭୋଗୁଅଛନ୍ତି । ତେଣୁ ବର୍ତ୍ତମାନ ମୋର ମାଂସକୁ ଭୋଜନ କରନ୍ତୁ । କାରଣ—

ସ୍ୱାମିମୂଳା ଭବନ୍ତ୍ୟେବ ସର୍ବାଃ ପ୍ରକୃତୟଃ ଖଳୁ ।
ସମୂଳେଷ୍ୱପି ବୃକ୍ଷେଷୁ ପ୍ରଯତ୍ନଃ ସଫଳୋ ନୃଣାମ୍ । ୬୪ ।

ସବୁ ପ୍ରଜାଙ୍କର ମୂଳ (ଆଶ୍ରୟ) ହେଉଛନ୍ତି ରାଜା । ମୂଳଥିବା ବୃକ୍ଷରେ ହିଁ ପ୍ରଯତ୍ନ କଲେ ତାହା ଫଳପ୍ରଦ ହୁଏ । (ଅର୍ଥାତ୍ ମୂଳ ନଷ୍ଟ ହୋଇଗଲେ ବୃକ୍ଷ ଫଳ ଦେବ କାହୁଁ ?)" । ୬୪ ।

ସିଂହ କହିଲା, "ଭଦ୍ର, ପ୍ରାଣତ୍ୟାଗ କରିବା ବରଂ ଭଲ, କିନ୍ତୁ ଏଭଳି କାର୍ଯ୍ୟରେ ମନ ଦେବା ଉଚିତ ନୁହେଁ ।" ଶୃଗାଳ ମଧ୍ୟ ସେହିପରି କହିଲା । ତହୁଁ ସିଂହ କହିଲା, "ନା, ନା, ତା ହୋଇ ନ ପାରେ ।" ତତ୍ପରେ ବ୍ୟାଘ୍ର କହିଲା, "ମୋର ଶରୀରଦ୍ୱାରା ପ୍ରଭୁ, ଜୀବନରକ୍ଷା କରନ୍ତୁ ।" ସିଂହ କହିଲା, "ଏହା କଦାପି ଉଚିତ ହେବ ନାହିଁ ।"

ପ୍ରଭୁ ବାପୁସାହଙ୍କୁ ଯେପରି ଭୋଜନ କଲେ ନାହିଁ, ମୋତେ ମଧ୍ୟ ସେହିପରି ଭୋଜନ କରିବେ ନାହିଁ ବୋଲି ବିଶ୍ୱାସ କରି ଚିତ୍ରକର୍ଣ୍ଣ ମଧ୍ୟ ନିଜର ଶରୀର ଦାନ କରିବାକୁ କହିଲା । ତାହାର କଥା ଶୁଣିବା ମାତ୍ରେ ବ୍ୟାଘ୍ର ତାହାର ବକ୍ଷ ବିଦୀର୍ଣ୍ଣ କରି ତାକୁ ବଧ କଲା । ସମସ୍ତେ ତାହାର ମାଂସ ଭକ୍ଷଣ କଲେ । ଏଣୁ ମୁଁ କହୁଛି, ମୁଁ ସାଧୁଲୋକମାନଙ୍କର ମନ ମଧ୍ୟ ଖଳଲୋକର କଥାରେ ଅବଶ୍ୟ ସନ୍ଦେହାକୁଳ ହୁଏ—ଇତ୍ୟାଦି କହିଥିଲି ।

ତତ୍ପରେ ତୃତୀୟ ଧୂର୍ତ୍ତର କଥା ଶୁଣି ନିଜର ମତିଭ୍ରମ ଘଟିଛି ବୋଲି ସ୍ଥିର କରି ବ୍ରାହ୍ମଣ ଛାଗଳକୁ ପରିତ୍ୟାଗ କଲେ ଓ ସ୍ନାନ କରି ଗୃହକୁ ଗଲେ । ଧୂର୍ତ୍ତମାନେ ଛାଗଳକୁ ନେଇ ଖାଇଲେ । ଏଣୁ ମୁଁ କହୁଥିଲି, ଯେଉଁ ଲୋକ ଦୁଷ୍ଟ ଲୋକକୁ ନିଜ ପରି—ଇତ୍ୟାଦି ।

ରାଜା (ଶିବବର୍ଣ୍ଣ) କହିଲେ, "ମେଘବର୍ଣ୍ଣ, ତୁମେ ଶତ୍ରୁମାନଙ୍କ ଭିତରେ ଏତେ ଦୀର୍ଘକାଳ ରହିଲ କାହିଁକି ? କାହିଁକି ବା ସେମାନଙ୍କୁ ଆପଣାର କରୁଥିଲ ?" ମେଘବର୍ଣ୍ଣ କହିଲା—"ପ୍ରଭୁ, ସ୍ୱାମୀଙ୍କ କାର୍ଯ୍ୟ ପୂର୍ଣ୍ଣ କରିବା ପାଇଁ ଓ ନିଜର ସ୍ୱାର୍ଥପାଇଁ କିଏ କଅଣ ନ କରେ ? ଦେଖନ୍ତୁ—

ଲୋକୋ ବହତି କିଂ ରାଜନ୍ନ ମୂର୍ଦ୍ଧ୍ନା ଦଗ୍ଧୁମିନ୍ଧନମ୍ ।
କ୍ଷାଳୟନ୍ତ୍ୟପି ବୃକ୍ଷାଙ୍‌ଘ୍ରିଂ ନଦୀବେଳା ନିକୃନ୍ତତି । ୭୫ ।

ମହାରାଜ, ଲୋକେ ଜାଳିବା ପାଇଁ କାଠକୁ ମୁଣ୍ଡ ଉପରେ ବୁହାନ୍ତି ନାହିଁକି ? ନଦୀସ୍ରୋତ ଗଛର ପାଦକୁ (ମୂଳକୁ) ଧୋଇ ଧୋଇ ଗଛକୁ ଉପାଡ଼ି ପକାଏ ନାହିଁକି ? ( ଅର୍ଥାତ୍ ମୁଁ ସେଠାରେ ରହି ସେମାନଙ୍କୁ ଆପଣାର କରି ସେମାନଙ୍କର ସର୍ବନାଶ କରୁଥିଲି ) । ୭୫ ।
ଆହୁରି କଥିତ ଅଛି—

ସ୍କନ୍ଧେନାଽପି ବହେଚ୍ଛତ୍ରୂନ୍ କାର୍ଯ୍ୟମାସାଦ୍ୟ ବୁଦ୍ଧିମାନ୍ ।
ଯଥା ବୃଦ୍ଧେନ ସର୍ପେଣ ମଣ୍ଡୂକା ବିନିପାତିତାଃ । ୭୬ ।

କାର୍ଯ୍ୟ ପଡ଼ିଲେ ବୁଦ୍ଧିମାନ୍ ଲୋକ ଶତ୍ରୁକୁ ମଧ୍ୟ କାନ୍ଧରେ ବସାଇ ନିଏ । ଯେପରିକି ବୃଦ୍ଧ ସର୍ପ ବେଙ୍ଗକୁ ମସ୍ତକ ଉପରେ ବସାଇ ପରେ ବଧ କରିଥିଲା । ୭୬ ।

ରାଜା କହିଲେ, "ସେ କଥା କଅଣ ?"

ମେଘବର୍ଣ୍ଣ କହିଲା—

## କଥା-୧୧

ଜୀର୍ଣ୍ଣୋଦ୍ୟାନରେ ମନ୍ଦବିଷ ନାମରେ ଗୋଟିଏ ସର୍ପ ଥିଲା । ନିତାନ୍ତ ଜରାଗ୍ରସ୍ତ ହୋଇଯିବାରୁ ନିଜର ଆହାର ଅନ୍ୱେଷଣ କରିବାକୁ ଅକ୍ଷମ ହୋଇ ସେ ଗୋଟିଏ ପୁଷ୍କରିଣୀ କୂଳରେ ପଡ଼ି ରହିଲା । ଗୋଟିଏ ଭେକ ଦୂରରୁ ତାହାକୁ ଦେଖି ପଚାରିଲା, "ଏ କଅଣ ? ତୁମେ ଆହାର ଅନ୍ୱେଷଣ କରୁନାହଁ କାହିଁକି ?" ସର୍ପ କହିଲା, "ଭଦ୍ର, ତୁମେ ଯାଅ, ମୋ ପରି ହତଭାଗ୍ୟର ଖବର ପଚାରିବାରେ ତୁମର ଲାଭ କଅଣ ?" ତହୁଁ ଭେକର କୌତୂହଳ ଜାତ ହେବାରୁ ସେ କହିଲା, "ତୁମର କଅଣ ହୋଇଛି ବିଶଦଭାବରେ କହ ।" ସର୍ପ କହିଲା, "ଭଦ୍ର ! ବ୍ରହ୍ମପୁରନିବାସୀ ଶ୍ରୋତ୍ରିୟ ବ୍ରାହ୍ମଣ କୌଣ୍ଡିନ୍ୟଙ୍କର ଗୋଟିଏ ପୁଅ ଥିଲା । ପୁଅଟିର ବୟସ କୋଡ଼ିଏ ବର୍ଷ । ସେ ସବୁ ଗୁଣରେ ପରିପୂର୍ଣ୍ଣ ଥିଲା । ତାର ନାମ ସୁଶୀଳ । ଦୁର୍ଦ୍ଦୈବବଶତଃ ମୁଁ ନିଷ୍ଠୁର ତାକୁ ଦଂଶନ କଲି । ସୁଶୀଳ ମୃତ ହୋଇଥିବାର ଦେଖି କୌଣ୍ଡିନ୍ୟ ଶୋକରେ ମୂର୍ଚ୍ଛିତ ହୋଇ ଭୂମିରେ ଲୋଟିବାକୁ ଲାଗିଲେ । ତପରେ ତାଙ୍କର ବ୍ରହ୍ମପୁରବାସୀ ବାନ୍ଧବମାନେ ସେଠାକୁ ଆସି ବସିଲେ । କଥିତ ଅଛି—

ଉତ୍ସବେ, ବ୍ୟସନେ, ଯୁଦ୍ଧେ, ଦୁର୍ଭିକ୍ଷେ, ରାଷ୍ଟ୍ରବିପ୍ଳବେ ।
ରାଜଦ୍ୱାରେ, ଶ୍ମଶାନେ ଚ ଯସ୍ତିଷ୍ଠତି ସ ବାନ୍ଧବଃ । ୭୭ ।

ଉତ୍ସବରେ, ବିପଦରେ, ଯୁଦ୍ଧରେ, ଦୁର୍ଭିକ୍ଷରେ, ରାଜ୍ୟରେ ବିପ୍ଳବବେଳେ, ରାଜଦ୍ୱାରରେ ଓ ଶ୍ମଶାନରେ ଯେ ପାଖରେ ରହେ (ସାହାଯ୍ୟ କରେ) ତାକୁ ବନ୍ଧୁ ବୋଲାଯାଏ । ୭୭ ।

ତହୁଁ କପିଳ ନାମକ ଜଣେ ବେଦପାରଙ୍ଗମ ବ୍ରାହ୍ମଣ କହିଲେ, "ହେ କୌଣ୍ଡିନ୍ୟ, ତୁମେ ବଡ଼ ମୂର୍ଖ; କାରଣ ଏପରି ବିଳାପ କରୁଛ । ଶୁଣ—

କ୍ରୋଡ଼ୀକରୋତି ପ୍ରଥମଂ ଯଦା ଜାତମନିତ୍ୟତା ।
ଧାତ୍ରୀବ, ଜନନୀ ପଶ୍ଚାତ୍ତଦା ଶୋକସ୍ୟ କଃ କ୍ରମଃ । ୬୮ ।

ପ୍ରଥମେ ଜନ୍ମ ହେଲାବେଳେ ଅନିତ୍ୟତା ଶିଶୁକୁ ଧାତ୍ରୀ ପରି କ୍ରୋଡ଼କୁ ନେଇଥାଏ; ପରେ ମାତା ନେଇଥାଏ । ତେଣୁ ଏଥିରେ ଶୋକ କରିବାର କି ପ୍ରୟୋଜନ ? । ୬୮ । ପୁନଶ୍ଚ—

କ୍ୱ ଗତାଃ ପୃଥିବୀପାଳାଃ ସସୈନ୍ୟବଲବାହନାଃ ।
ବିୟୋଗସାକ୍ଷିଣୀ ଯେଷାଂ ଭୂମିରଦ୍ୟାପି ତିଷ୍ଠତି । ୬୯ ।

ସୈନ୍ୟ, ପରାକ୍ରମ, ଯାନବାହନ ସହିତ ରାଜାମାନେ କୁଆଡ଼େ ଗଲେ ? କିନ୍ତୁ ସେମାନଙ୍କ ବିଦାୟର ସାକ୍ଷୀରୂପିଣୀ ଏଇ ପୃଥିବୀ ପଡ଼ି ରହିଛି । ୬୯ । ପୁଣି—

ଜାତସ୍ୟ ହି ଧ୍ରୁବୋ ମୃତ୍ୟୁର୍ଧ୍ରୁବଂ ଜନ୍ମ ମୃତସ୍ୟ ଚ ।
ଅଦ୍ୟ ବାଽବ୍ଦଶତାନ୍ତେ ବା ମୃତ୍ୟୁର୍ବୈ ପ୍ରାଣିନାଂ ଧ୍ରୁବଃ । ୭୦ ।

ଯାହାର ଜନ୍ମ ହୋଇଅଛି, ତାହାର ଅବଶ୍ୟ ମୃତ୍ୟୁ ହେବ । ଯେ ମରିଛି, ତାର ନିଶ୍ଚୟ ଜନ୍ମ ହେବ । ଆଜି ହେଉ ବା ଶତବର୍ଷ ପରେ ହେଉ, ପ୍ରାଣୀର ମୃତ୍ୟୁ ନିଶ୍ଚିତ । ୭୦ । ଏହାଛଡ଼ା—

କାୟଃ ସନ୍ନିହିତାଽପାୟଃ ସମ୍ପଦଃ ପଦମାପଦାମ୍ ।
ସମାଗମାଃ ସାଽପଗମାଃ, ସର୍ବମୁତ୍ପାଦି ଭଙ୍ଗୁରମ୍ । ୭୧ ।

ଶରୀର ସର୍ବଦା ନାଶଶୀଳ ଅଟେ, ସମ୍ପତ୍ତି ଅଶେଷ ବିପତ୍ତିର ଆଧାର, ମିଳନ ବିରହଯୁକ୍ତ ଅଟେ ଏବଂ ଯାହାର ଜନ୍ମ ଅଛି, ତାହା ବିନାଶଶୀଳ ଅଟେ । ୭୧ ।

ପ୍ରତିକ୍ଷଣମୟଂ କାୟଃ କ୍ଷୀୟମାଣୋ ନ ଲକ୍ଷ୍ୟତେ ।
ଆମକୁମ୍ଭ ଇବାଽମ୍ଭଃସ୍ଥୋ ବିଶୀର୍ଣ୍ଣଃ ସନ୍ ବିଭାବ୍ୟତେ । ୭୨ ।

ଏହି ଶରୀର ପ୍ରତି ମୁହୂର୍ତ୍ତରେ କ୍ଷୟ ପାଉଅଛି; କିନ୍ତୁ ତାହା ଦେଖା ଯାଉନାହିଁ । ଯେପରି ଜଳ ମଧ୍ୟସ୍ଥିତ ଅପକ୍ୱ ଘଟ ମିଳାଇ ଗିବାପରେ ତାହାର କ୍ଷୟ ଜଣା ପଡ଼ିଯାଏ, ସେହିପରି ଶରୀର ବିନଷ୍ଟ ହେଲେ ତାହାର ବିନାଶ ଜଣାପଡ଼େ । ୭୨ ।

ଆସନ୍ନତରତାମେତି ମୃତ୍ୟୁର୍ଜନ୍ତୋର୍ଦିନେଦିନେ ।
ଆଘାତଂ ନୀୟମାନସ୍ୟ ବଧ୍ୟସ୍ୟେବ ପଦେ ପଦେ । ୭୩ ।

ବଧସ୍ଥାନକୁ ନିଆ ଯାଉଥିବା ବଧ୍ୟପୁରୁଷ ପଦେ ପଦେ ମୃତ୍ୟୁର ନିକଟତର ହେଲାପରି ପ୍ରତିଦିନ ପ୍ରାଣୀ ମୃତ୍ୟୁର ନିକଟବର୍ତ୍ତୀ ହେଉଅଛି । ୭୩ ।

ଅନିତ୍ୟଂ ଯୌବନଂ, ରୂପଂ, ଜୀବିତଂ, ଦ୍ରବ୍ୟସଞ୍ଚୟଃ ।
ଐଶ୍ୱର୍ଯ୍ୟଂ, ପ୍ରିୟସଂବାସୋ, ମୁହ୍ୟେତ୍ତତ୍ର ନ ପଣ୍ଡିତଃ । ୭୪ ।

ଯୌବନ, ସୌନ୍ଦର୍ଯ୍ୟ, ଜୀବନ, ଧନସଞ୍ଚୟ, ଐଶ୍ୱର୍ଯ୍ୟ, ପ୍ରିୟସମାଗମ—ଏ ସବୁ ଅନିତ୍ୟ; ଜ୍ଞାନୀ ଲୋକ ଏ ସବୁରେ ଆସକ୍ତ ହୁଏ ନାହିଁ । ୭୪ ।

ଯଥା କାଷ୍ଠଞ୍ଚ, କାଷ୍ଠଞ୍ଚ ସମେୟାତାଂ ମହୋଦଧୌ ।
ସମେତ୍ୟ ଚ ବ୍ୟପେୟାତାଂ ତଦ୍ୱଦ୍‌ଭୂତସମାଗମଃ । ୭୫ ।

ଯେପରି ସମୁଦ୍ରରେ ଦୁଇଖଣ୍ଡ କାଷ୍ଠ ( ଭିନ୍ନ ଭିନ୍ନ ଦିଗରୁ ଆସି ) ମିଳିତ ହୁଅନ୍ତି, ପୁଣି ମିଳିବା ପରେ ଅଲଗା ହୋଇଯାନ୍ତି, ସେହିପରି ପ୍ରାଣୀମାନଙ୍କର ମିଳନ ପରେ ବିଚ୍ଛେଦ ହୋଇଯାଏ । ୭୫ ।

ଯଥା ହି ପଥିକଃ କଶ୍ଚିଚ୍ଛାୟାମାଶ୍ରିତ୍ୟ ତିଷ୍ଠତି ।
ବିଶ୍ରମ୍ୟ ଚ ପୁନର୍ଗଚ୍ଛେତ୍ତଦ୍ୱଦ୍ଭୂତସମାଗମଃ । ୭୬ ।

ଯେପରି ପଥିକ ରାସ୍ତାରେ କୌଣସି ବୃକ୍ଷଚ୍ଛାୟାରେ ବସିଯାଏ ଓ ବିଶ୍ରାମ ନେବା ପରେ ପୁଣି ଚାଲିଯାଏ, ସେହିପରି ପ୍ରାଣୀମାନେ ଜଗତରେ କିଛିଦିନ ପାଇଁ ପରସ୍ପର ମିଳି ରହନ୍ତି ଓ ପୁଣି ଜଣେ ଅନ୍ୟକୁ ଛାଡ଼ି ଚାଲିଯାନ୍ତି । ୭୬ । ଆହୁରି—

ପଞ୍ଚଭିର୍ନିର୍ମିତେ ଦେହେ ପଞ୍ଚତ୍ୱଂ ଚ ପୁନର୍ଗତେ ।
ସ୍ୱାଂ ସ୍ୱାଂ ଯୋନିମନୁପ୍ରାପ୍ତେ, ତତ୍ର କା ପରିଦେବନା ? ୭୭ ।

ଏହି ଶରୀର ( ପୃଥିବୀ, ଜଳ, ତେଜ, ବାୟୁ ଓ ଆକାଶ ) ପଞ୍ଚଭୂତରେ ଗଠିତ । ମୃତ୍ୟୁପରେ ଏମାନେ ପୁଣି ନିଜ ନିଜ ମୂଳ ଭୂତ ସଙ୍ଗେ ମିଳିଯାନ୍ତି । ତେଣୁ ଏଥିରେ ବିଳାପର କି କାରଣ ଅଛି ? ୭୭ ।

ଯାବତଃ କୁରୁତେ ଜନ୍ତୁଃ ସମ୍ବନ୍ଧାନ୍ମନସଃ ପ୍ରିୟାନ୍ ।
ତାବନ୍ତୋଽସ୍ୟ ନିଖନ୍ୟନ୍ତେ ହୃଦୟେ ଶୋକଶଙ୍କବଃ । ୭୮ ।

ପ୍ରାଣୀ ଯେତେ ଅଧିକ ପରିମାଣରେ ନିଜ ମନର ପ୍ରିୟ ସମ୍ବନ୍ଧ ସ୍ଥାପନ କରେ ସେ ସେତିକି ପରିମାଣରେ ହୃଦୟରେ ଶୋକର କଣ୍ଟା ପୋତିଥାଏ । ( ଅର୍ଥାତ୍ ଦିନେ ସେହି ପ୍ରିୟ ସମ୍ବନ୍ଧର ବିନାଶରେ ତାକୁ ଦୁଃଖ ଭୋଗିବାକୁ ପଡ଼ିବ ) । ୭୮ ।

ନାଽତ୍ୟନ୍ତମନ୍ୟସଂବାସୋ ଲଭ୍ୟତେ ଯେନ କେନଚିତ୍ ।
ଅପି ସ୍ୱେନ ଶରୀରେଣ, କିମୁତାଽନ୍ୟେନ କେନଚିତ୍ । ୭୯ ।

ଚିରସଂଯୋଗ କେହି ଲାଭ କରି ନ ପାରେ । ନିଜ ଶରୀର ସହିତ ଚିରସମ୍ବନ୍ଧ ନାହିଁ । ଏପରି ସ୍ଥଳେ ଅନ୍ୟ ସହିତ ଚିରସମ୍ବନ୍ଧର ପ୍ରଶ୍ନ କାହିଁ ? ୭୯ । ପୁଣି—

ସଂଯୋଗୋ ହି ବିୟୋଗସ୍ୟ ସଂସୂଚୟତି ସମ୍ଭବମ୍
ଅନତିକ୍ରମଣୀୟସ୍ୟ ଜନ୍ମମୃତ୍ୟୋରିବାଽଗମମ୍ । ୮୦ ।

ଯେପରି କୌଣସି ପ୍ରାଣୀର ଜନ୍ମ ତାର ମୃତ୍ୟୁର ଅଲଙ୍ଘନୀୟ ଆଗମନର ସୂଚନା ଦେଇଥାଏ, ସେହିପରି କୌଣସି ବସ୍ତୁର ସଂଯୋଗହିଁ ଏହାଠାରୁ ବିୟୋଗର ସୂଚନା ଦେଇଥାଏ । ୮୦ ।

ଆପାତରମଣୀୟାନାଂ ସଂଯୋଗାନାଂ ପ୍ରିୟୈଃ ସହ ।
ଅପଥ୍ୟାନାମିବାଽନ୍ନାନାଂ ପରିଣାମୋଽତିଦାରୁଣଃ । ୮୧ ।

ଅପଥ୍ୟ ଆହାର ଭୋଜନର ପରିଣାମ ପରି ଆପାତମନୋହର ପ୍ରିୟଜନ ସଂଯୋଗର ପରିଣାମ ଅତି ଭୟଙ୍କର ହୋଇଥାଏ । ୮୧ । ଏହାଛଡ଼ା—

ବ୍ରଜନ୍ତି, ନ ନିବର୍ତ୍ତନ୍ତେ ସ୍ରୋତାଂସି ସରିତାଂ ଯଥା
ଆୟୁରାଦାୟ ମର୍ତ୍ତ୍ୟାନାଂତଥା ରାତ୍ର୍ୟହନୀ ସଦା । ୮୨ ।

ନଦୀର ସ୍ରୋତ ଯେପରି ବହିଯାଏ କିନ୍ତୁ ଫେରିଆସେ ନାହିଁ, ସେହିପରି ଦିବା ଓ ରାତ୍ରି ପ୍ରାଣୀମାନଙ୍କର ଆୟୁକୁ ନେଇ ଯାଉଛନ୍ତି, ଫେରି ଆସୁ ନାହାନ୍ତି । ୮୨ ।

ସୁଖାଽସ୍ୱାଦପରୋ ଯସ୍ତୁ ସଂସାରେ ସତ୍ସମାଗମଃ ।
ସ ବିୟୋଗାଽବସାନତ୍ୱାଦ୍ ଦୁଃଖାନାଂ ଧୁରି ଯୁଜ୍ୟତେ । ୮୩ ।

ଏହି ସଂସାରରେ ଯେଉଁ ସଜ୍ଜନମାନଙ୍କର ମିଳନ ଅତ୍ୟନ୍ତ ସୁଖଦାୟକ, ଶେଷରେ ସେମାନଙ୍କର ମଧ୍ୟ ବିୟୋଗ ଘଟେ; ଏହି ହେତୁରୁ ଏହା ମଧ୍ୟ ଦୁଃଖମାନଙ୍କରେ ପ୍ରଥମ ବୋଲି ବିବେଚିତ ହୁଏ । ୮୩ ।

ଅତ ଏବ ହି ନେଚ୍ଛନ୍ତି ସାଧବଃ ସତ୍‌ସମାଗମମ୍ ।
ଯଦ୍‌ବିୟୋଗାଽସିଲୂନସ୍ୟ ମନସୋ ନାଽସ୍ତି ଭେଷଜମ୍ । ୮୪ ।

ବିୟୋଗ ରୂପକ ଖଡ୍‌ଗଦ୍ୱାରା ଛିନ୍ନ ହୃଦୟକୁ ଆରୋଗ୍ୟ କରିବା ପାଇଁ କୌଣସି ଔଷଧ ନାହିଁ । ସେହି ହେତୁରୁ ସାଧୁ ଲୋକମାନେ ସଜ୍ଜନମାନଙ୍କ ସହିତ ମିଳନ ମଧ୍ୟ ଇଚ୍ଛା କରନ୍ତି ନାହିଁ । ୮୪ ।

ସୁକୃତାନ୍ୟପି କର୍ମାଣି ରାଜଭିଃ ସଗରାଦିଭିଃ ।
ଅଥ ତାନ୍ୟେବ କର୍ମାଣି, ତେ ଚାଽପି ପ୍ରଳୟଂ ଗତାଃ । ୮୫ ।

ସଗର ପ୍ରଭୃତି ରାଜାମାନେ ଅନେକ ପୁଣ୍ୟ କାର୍ଯ୍ୟ କରିଥିଲେ; କିନ୍ତୁ ଆଜି ସେମାନଙ୍କର କାର୍ଯ୍ୟ ନାହିଁ କି ସେମାନେ ନାହାନ୍ତି । ୮୫ ।

ସଞ୍ଚିନ୍ତ୍ୟ ସଞ୍ଚିନ୍ତ୍ୟ ତମୁଗ୍ରଦଣ୍ଡଂ,
ମୃତ୍ୟୁଂ ମନୁଷ୍ୟସ୍ୟ ବିଚକ୍ଷଣସ୍ୟ ।
ବର୍ଷାମ୍ବୁସିକ୍ତା ଇବ ଚର୍ମବନ୍ଧାଃ,
ସର୍ବେ ପ୍ରୟତ୍ନାଃ ଶିଥିଳୀଭବନ୍ତି । ୮୬ ।

ପ୍ରାଣୀମାନଙ୍କର ଅଲଙ୍ଘନୀୟ ଉଗ୍ରଦଣ୍ଡଧାରୀ ମୃତ୍ୟୁକୁ ଚିନ୍ତା କରି କରି ବିଚକ୍ଷଣ ଲୋକର ସମସ୍ତ ପ୍ରୟାସ ମଧ୍ୟ ବର୍ଷାଜଳଦ୍ୱାରା ଆର୍ଦ୍ର-ଚର୍ମବନ୍ଧନ ପରି ଶିଥିଳ ହୋଇଯାଏ । ( ମୃତ୍ୟୁ ଚିନ୍ତା କରି ଜ୍ଞାନୀ ଲୋକେ ସାଂସାରିକ ପ୍ରୟତ୍ନରେ ବିମୁଖ ହୁଅନ୍ତି ) । ୮୬ ।

ଯାମେବ ରାତ୍ରିଂ ପ୍ରଥମାମୁପୈତି
ଗର୍ଭେ ନିବାସଂ ନରବୀର ! ଲୋକଃ ।
ତତଃ ପ୍ରଭୃତ୍ୟସ୍ଖଳିତପ୍ରୟାଣଃ
ସ ପ୍ରତ୍ୟହଂ ମୃତ୍ୟୁସମୀପମେତି । ୮୭ ।

ହେ ରାଜନ୍ ! ପ୍ରାଣୀ ସର୍ବପ୍ରଥମେ ଯେଉଁ ରାତ୍ରିରେ ଗର୍ଭରେ ନିବାସ କରେ, ସେହି ରାତ୍ରିଠାରୁ ସେ ଅବାଧ ଗତିରେ ପ୍ରତିଦିନ ମୃତ୍ୟୁନିକଟକୁ ଅଗ୍ରସର ହେଉଥାଏ । ୮୭ ।

ଏଥିପାଇଁ ଏ ସଂସାରକୁ ବିଚାର କର । ଏହି ଶୋକ ହେଉଛି ଅଜ୍ଞାନର ପ୍ରପଞ୍ଚ । ଦେଖ—

ଅଜ୍ଞାନଂ କାରଣଂ ନ ସ୍ୟାଦ୍
ବିୟୋଗୋ ଯଦି କାରଣମ୍ ।
ଶୋକୋ ଦିନେଷୁ ଗଚ୍ଛତ୍ସୁ
ବର୍ଦ୍ଧତାମପଯାତି କିମ୍ । ୮୮ ।

ଯଦି ଶୋକର କାରଣ ଅଜ୍ଞାନ ନ ହୋଇ ବିୟୋଗ ହୋଇଥାନ୍ତା, ତେବେ ଦିନ ପରେ ଦିନର ଗତି ସଙ୍ଗେ ଶୋକ ମଧ୍ୟ ବୃଦ୍ଧି ନ ପାଇ କ୍ରମଶଃ ହ୍ରାସ ପାଏ କାହିଁକି ? ( ତେଣୁ ଶୋକର କାରଣ ହେଉଛି ଅଜ୍ଞାନ ) । ୮୮ । ତେଣୁ ହେ ଭଦ୍ର, ଶୋକ ପରିହାର କରି ଆତ୍ମାର ଅନୁସନ୍ଧାନ କର । କାରଣ,

ଅକାଣ୍ଡପାତଜାତାନାଂ ଗାତ୍ରାଣାଂ ମର୍ମଭେଦିନାମ୍ ।
ଗାଢ଼ଶୋକପ୍ରହାରାଣାମଚିନ୍ତୈବ ମହୌଷଧମ୍ । ୮୯ ।

ଆକସ୍ମିକଭାବରେ ଉପସ୍ଥିତ ଓ ଶରୀରର ଅଭ୍ୟନ୍ତରକୁ ଭେଦ କରୁଥିବା ଗଭୀର ଶୋକର ଏକମାତ୍ର ଔଷଧ ହେଉଛି ଅଚିନ୍ତା । ୮୯ ।

ତତ୍ପରେ ତାହାର କଥା ଶୁଣି କୌଣ୍ଡିନ୍ୟ ନଦରୁ ଉଠିଲା ପରେ କହିଲେ, "ଏବେ ମୋର ଘରେ ରହିବା ନର୍କରେ ରହିବା ସଙ୍ଗେ ସମାନ । ମୁଁ ବନକୁ ଚାଲିଯିବି ।"

କପିଳ ପୁଣି କହିଲେ—

ବନେଽପି ଦୋଷାଃ ପ୍ରଭବନ୍ତି ରାଗିଣାଂ
ଗୃହେଽପି ପଞ୍ଚେନ୍ଦ୍ରିୟନିଗ୍ରହସ୍ତପଃ ।
ଅକୁତ୍ସିତେ କର୍ମଣି ଯଃ ପ୍ରବର୍ତ୍ତତେ
ନିବୃତ୍ତରାଗସ୍ୟ ଗୃହଂ ତପୋବନମ୍ । ୯୦ ।

ଯେଉଁମାନେ ବିଷୟାନୁରକ୍ତ ସେମାନେ ବନରେ ମଧ୍ୟ ଶୋକ-ଦୁଃଖରୁ ମୁକ୍ତ ହୋଇ ରହି ପାରନ୍ତି ନାହିଁ । ଗୃହରେ ରହି ପଞ୍ଚେନ୍ଦ୍ରିୟକୁ ସଂଯତ କରି ପାରିଲେ ତାହାହିଁ ତପସ୍ୟା ହୋଇଥାଏ । ଯିଏ ଶାସ୍ତ୍ର-ବିହିତ କର୍ମରେ ରତ ହୋଇ ବିଷୟାନୁରକ୍ତିକୁ ତ୍ୟାଗ କରିପାରେ, ତାହା ପକ୍ଷରେ ଗୃହ ତପୋବନ ସଦୃଶ ଅଟେ । ୯୦ । କାରଣ—

ଦୁଃଖିତୋଽପି ଚରେଦ୍ଧର୍ମଂ, ଯତ୍ର କୁତ୍ରାଽଶ୍ରମେ ରତଃ ।
ସମଃ ସର୍ବେଷୁ ଭୂତେଷୁ, ନ ଲିଙ୍ଗଂ ଧର୍ମକାରଣମ୍ । ୯୧ ।

ମନୁଷ୍ୟର କର୍ତ୍ତବ୍ୟ ହେଉଛି, ଯେ କୌଣସି ଆଶ୍ରମରେ ରହି ଦୁଃଖିତ ଅବସ୍ଥାରେ ମଧ୍ୟ ଧର୍ମାଚରଣ କରିବ ଓ ସବୁ ପ୍ରାଣୀଙ୍କ ପ୍ରତି ସମାନ ଭାବ ରଖିବ । କୌଣସି ନିର୍ଦ୍ଦିଷ୍ଟ ବେଶଭୂଷା ଧର୍ମର କାରଣ ହୋଇ ନ ପାରେ । ୯୧ । କଥିତ ଅଛି—

ବୃତ୍ତ୍ୟର୍ଥଂ ଭୋଜନଂ ଯେଷାଂ, ସନ୍ତାନାର୍ଥଂ ଚ ମୈଥୁନମ୍
ବାକ୍ ସତ୍ୟବଚନାର୍ଥାୟ, ଦୁର୍ଗାଣ୍ୟପି ତରନ୍ତି ତେ । ୯୨ ।

ଯେଉଁମାନେ କେବଳ ଜୀବନଧାରଣ ପାଇଁ ଭୋଜନ କରନ୍ତି, କେବଳ ସନ୍ତାନଲାଭ ପାଇଁ ସ୍ତ୍ରୀସହବାସ କରନ୍ତି, କେବଳ ସତ୍ୟ-ପ୍ରକାଶ ପାଇଁ କଥା କହନ୍ତି, ସେମାନେ ସେକଳ ବିପଦରୁ ଉଦ୍ଧାର ପାଇଥାନ୍ତି । ୯୨ । ପୁଣି ( ମହାଭାରତରେ ଭୀଷ୍ମ ପିତାମହ ଯୁଧିଷ୍ଠିରଙ୍କୁ କହିଅଛନ୍ତି )—

ଆତ୍ମା ନଦୀ, ସଂଯମ ପୁଣ୍ୟତୀର୍ଥା
ସତ୍ୟୋଦକା, ଶୀଳତଟା, ଦୟୋର୍ମିଃ ।
ତତ୍ରାଽଭିଷେକଂ କୁରୁ ପାଣ୍ଡୁପୁତ୍ର !
ନ ବାରିଣା ଶୁଧ୍ୟତି ଚାନ୍ତରାତ୍ମା । ୯୩ ।

ହେ ପାଣ୍ଡୁପୁତ୍ର ଯୁଧିଷ୍ଠିର, ଜଳରେ ଅନ୍ତରାତ୍ମା ଶୁଦ୍ଧ ହୋଇ ନ ପାରେ । ଆତ୍ମା ହେଉଛି ନଦୀ, ସଂଯମ ହେଉଛି ପୁଣ୍ୟ ତୀର୍ଥ, ସତ୍ୟ ହେଉଛି ତୀର୍ଥଜଳ, ସଦାଚାର ହେଉଛି ସେହି ନଦୀର ତଟ, ଦୟା ହେଉଛି ତାର ତରଙ୍ଗ । ସେହି ନଦୀରେ ସ୍ନାନ କର । ୯୩ । ବିଶେ-ଷତଃ—

ଜନ୍ମମୃତ୍ୟୁଜରାବ୍ୟାଧିବେଦନାଭିରୁପଦ୍ରୁତମ୍ ।
ସଂସାରମିମମୁତ୍ପନ୍ନମସାରଂ ତ୍ୟଜତଃ ସୁଖମ୍ । ୯୪ ।

ଜନ୍ମ, ମରଣ, ବାର୍ଦ୍ଧକ୍ୟ, ରୋଗ, ଯନ୍ତ୍ରଣାଦ୍ୱାରା ପରିପୂର୍ଣ୍ଣ ଏହି ଅସାର ସଂସାରକୁ ତ୍ୟାଗ କରିବାହିଁ ହେଉଛି ସୁଖ । ୯୪ । ଯେହେତୁ—

ଦୁଃଖମେବାଽସ୍ତି, ନ ସୁଖଂ, ଯସ୍ମାତ୍ତଦୁପଲକ୍ଷ୍ୟତେ ।
ଦୁଃଖାର୍ତ୍ତସ୍ୟ ପ୍ରତୀକାରେ ସୁଖସଂଜ୍ଞା ବିଧୀୟତେ । ୯୫ ।

ଏହି ସଂସାରରେ ଦୁଃଖହିଁ ଅଛି, ସୁଖ ନାହିଁ; ତେଣୁ କେବଳ ଦୁଃଖ ଦେଖାଯାଏ । ଦୁଃଖରେ ପୀଡ଼ିତ ବ୍ୟକ୍ତିର ଦୁଃଖର ପ୍ରତୀକାରକୁ ସୁଖ କହିବା ବିଧେୟ । ୯୫ ।

କୌଣ୍ଡିନ୍ୟ କହିଲେ, "ସେ କଥା ସତ୍ୟ ।" ତତ୍ପରେ ସେହି ଶୋକାକୁଳ ବ୍ରାହ୍ମଣ ମୋତେ ଅଭିଶାପ ଦେଲେ, 'ଆଜଠାରୁ ତୁ ଭେକମାନଙ୍କର ବାହନ ହେବୁ ।' କପିଳ କୌଣ୍ଡିନ୍ୟଙ୍କୁ କହିଲେ, —ବର୍ତ୍ତମାନ ତୁମେ ଉପଦେଶ ଶୁଣିବାକୁ ଅସମର୍ଥ । ତୁମର ହୃଦୟ ଶୋକରେ ଅଧୀର । ତଥାପି ତୁମର କର୍ତ୍ତବ୍ୟ କଅଣ, ଶୁଣ ।

ସଙ୍ଗଃ ସର୍ବାତ୍ମନା ତ୍ୟାଜ୍ୟଃ
ସ ଚେତ୍ତ୍ୟକ୍ତୁଂ ନ ଶକ୍ୟତେ ।
ସ ସଦ୍ଭିଃ ସହ କର୍ତ୍ତବ୍ୟଃ
ସତାଂ ସଙ୍ଗୋହି ଭେଷଜମ୍ । ୯୬ ।

ଏହି ସଂସାରରେ ସମ୍ବନ୍ଧ ପରିତ୍ୟାଗ କରିବା ପ୍ରଧାନ କର୍ତ୍ତବ୍ୟ । ଯଦି ତାହା ସମ୍ପୂର୍ଣ୍ଣରୂପେ ତ୍ୟାଗ କରାଯାଇ ନ ପାରେ ତେବେ କେବଳ ସାଧୁସଙ୍ଗ କରିବା ଉଚିତ; ସାଧୁସଙ୍ଗହିଁ ହେଉଛି ସାଂସାରିକ ରୋଗର ମହୌଷଧ । ୯୬ । ପୁଣି—

କାମଃ ସର୍ବାତ୍ମନା ହେୟଃ,
ସ ଚେଦ୍ଧାତୁଂ ନ ଶକ୍ୟତେ ।
ସ୍ୱଭାର୍ଯ୍ୟାଂ ପ୍ରତି କର୍ତ୍ତବ୍ୟଃ,
ସୈବ ତସ୍ୟ ହି ଭେଷଜମ୍ । ୯୭ ।

କାମ ପ୍ରବୃତ୍ତିକୁ ସର୍ବଥା ପରିହାର କରିବା କର୍ତ୍ତବ୍ୟ । ଯଦି ତାକୁ ସମ୍ପୂର୍ଣ୍ଣ ପରିତ୍ୟାଗ କରି ନ ହୁଏ, ତେବେ କେବଳ ଆପଣା

ପତ୍ନୀ ମଧ୍ୟରେ ତାହା ସୀମିତ କରି ରଖିବା ଉଚିତ । ପତ୍ନୀ ହେଉଛି କାମନାତୃପ୍ତିର ଏକ ମାତ୍ର ଔଷଧ ।" ୯୭ ।

ଏହା ଶୁଣି କୌଣ୍ଡିନ୍ୟଙ୍କର ଶୋକାଗ୍ନି କପିଳଙ୍କର ଉପଦେଶାମୃତଦ୍ୱାରା ଶାନ୍ତଲାଭ କଲା । ସେ ଯଥାବିଧି ଦଣ୍ଡ କମଣ୍ଡଳୁ ଗ୍ରହଣ କରି ସନ୍ନ୍ୟାସ ଅବଲମ୍ବନ କଲେ । ଏଣୁ ବ୍ରାହ୍ମଣଙ୍କ ଅଭିଶାପରେ ଭେକମାନଙ୍କୁ ବହନ କରିବାପାଇଁ ମୁଁ ଏଠାରେ ରହିଛି ।"

ଏହାପରେ ସେହି ଭେକ ଯାଇ ଜାଲପାଦ ନାମକ ମଣ୍ଡୂକରାଜାଙ୍କ ଆଗରେ ଏହି କଥା କହିଲା । ତହୁଁ ଜାଲପାଦ ଆସି ସର୍ପର ପିଠି ଉପରେ ଚଢ଼ିଲା । ସର୍ପ ତାହାକୁ ପିଠି ଉପରେ ରଖି ବିଚିତ୍ର ଗତିରେ ଇତସ୍ତତଃ ଭ୍ରମଣ କଲା ।

ଦିନେ ସର୍ପ ମଣ୍ଡୂକରାଜକୁ ନେଇ ଚାଲିବାରେ ଅସମର୍ଥ ହେବାରୁ ଜାଲପାଦ କହିଲା, "ଆଜି ତୁମର ଗତି ଏତେ ମନ୍ଥର କାହିଁକି ?" ସର୍ପ କହିଲା, "ପ୍ରଭୁ, ଆହାର ବିନା ଏପରି ଅସମର୍ଥ ହୋଇ ଯାଇଅଛି ।"

ମଣ୍ଡୂକରାଜ କହିଲା, "ମୋର ଆଦେଶରେ ମଣ୍ଡୂକମାନଙ୍କୁ ଭକ୍ଷଣ କର ।"

'ଆପଣଙ୍କର ଏହି ମହାନ୍ ଅନୁଗ୍ରହ ଗ୍ରହଣ କଲି' ଏହା କହି ସର୍ପ ମଣ୍ଡୂକମାନଙ୍କୁ ଭକ୍ଷଣ କରିବାକୁ ଲାଗିଲା । ଶେଷରେ ପୁଷ୍କରିଣୀରେ ଆଉ ଗୋଟିଏ ହେଲେ ମଣ୍ଡୂକ ନ ଥିବାର ଦେଖି ସେହି ସର୍ପ ମଣ୍ଡୂକରାଜ ଜାଲପାଦକୁ ବଧ କରି ଭୋଜନ କଲା । ଏହି ହେତୁରୁ ମୁଁ କହୁଥିଲି, କାର୍ଯ୍ୟ ପଡ଼ିଲେ ବୁଦ୍ଧିମାନ୍ ଲୋକ ଶତ୍ରୁକୁ ମଧ୍ୟ କାନ୍ଧରେ ବସାଇ ନିଏ—ଇତ୍ୟାଦି ।

ମହାରାଜ ! ଏବେ ସେ ପୂର୍ବତନ ଆଖ୍ୟାନ କଥା ଥାଉ । ମୋ ମତରେ ରାଜା ହିରଣ୍ୟଗର୍ଭଙ୍କ ସଙ୍ଗେ ଯଦି ସନ୍ଧି କରିବା ବିଧେୟ, ତେବେ ସନ୍ଧି କରାଯାଉ ।

ରାଜା କହିଲେ—ଏ ତୁମର କି ବିଚାର ? ଆମେ ତାଙ୍କୁ ପରାସ୍ତ କରି ଦେଇଛୁ । ତେଣୁ ଯଦି ସେ ଆମ ଅଧୀନରେ ରହିବାକୁ ଚାହାନ୍ତି; ତେବେ ରହନ୍ତୁ । ତାହା ନ କଲେ ତାଙ୍କ ସଙ୍ଗେ ଯୁଦ୍ଧ କରିବା ।

ଏହି ସମୟରେ ଶୁକ ଜମ୍ବୁଦ୍ୱୀପରୁ ଆସି ଉପସ୍ଥିତ ହୋଇ କହିଲା—ମହାରାଜ ! ସିଂହଳ ଦ୍ୱୀପର ରାଜା ସାରସ ଏବେ ଜମ୍ବୁଦ୍ୱୀପ ଆକ୍ରମଣ କରି ରହିଛନ୍ତି ।

ରାଜା (ଚିତ୍ରବର୍ଣ୍ଣ) ଚକିତ ହୋଇ କହିଲେ—କଅଣ ? କଅଣ କହିଲ ?

ଶୁକ ପୂର୍ବପରି ପୁନର୍ବାର କହିଲା ।

ଗୃଧ୍ର ମନକୁ ମନ କହିଲା—ମନ୍ତ୍ରୀ ଚକ୍ରବାକ, ତୁମେ ଧନ୍ୟ ! ରାଜା କ୍ରୁଦ୍ଧ ସ୍ୱରରେ କହିଲେ—ହେଉ, ସେ କଥା ଥାଉ । ବର୍ତ୍ତମାନ ସେଠାକୁ ଯାଇ ଆଗେ ତାକୁ ହିଁ ସମୂଳେ ଧ୍ୱଂସ କରିବ ।

ଦୂରଦର୍ଶୀ (ଗୃଧ୍ର) ହସି ହସି କହିଲା—

ନ ଶରନ୍ମେଘବତ୍ କାର୍ଯ୍ୟଂ ବୃଥୈବ ଘନଗର୍ଜିତମ୍ ।
ପରସ୍ୟାଽର୍ଥମନର୍ଥଂ ବା ପ୍ରକାଶୟତି ନୋ ମହାନ୍ । ୯୮ ।

ଶରତକାଳର ମେଘ ପରି ବୃଥା ଗର୍ଜନ କରିବା ଉଚିତ ନୁହେଁ । ଅନ୍ୟମାନଙ୍କର ଭଲ ବା ମନ୍ଦ କଥା ଉତ୍ତମ ଲୋକେ ପ୍ରକାଶ କରନ୍ତି ନାହିଁ । ୯୮ । ପୁଣି—

ଏକଦା ନ ବିଗୃହ୍ଣୀୟାଦ୍‌ବହୂନ୍ ରାଜାଽଭିଘାତିନଃ
ସଦର୍ପୋଽପ୍ୟୁରଗଃ କୀଟୈର୍ବହୁଭିର୍ନାଶ୍ୟତେ ଧ୍ରୁବମ୍ । ୯୯ ।

କୌଣସି ରାଜା ଏକ ସମୟରେ ଆକ୍ରମଣକାରୀ ବହୁରାଜାଙ୍କ ସହିତ ଯୁଦ୍ଧ କରିବା କଦାପି ଉଚିତ ନୁହେଁ । କାରଣ ବହୁସଂଖ୍ୟକ କୀଟ ଏକତ୍ର ହୋଇ ଅଭିମାନୀ ସର୍ପକୁ ମଧ୍ୟ ବିନାଶ କରି ପାରନ୍ତି, ଏଥି ନିଃସନ୍ଦେହ । ୯୯ ।

ସନ୍ଧି ନ କରି ଏଠାରୁ ଯିବା ଉଚିତ ହେବ କି ? କାରଣ, ସେ ପଛରୁ ଆମ ଉପରେ ଆକ୍ରମଣ କରିଦେବେ । ପୁଣି—

ଯୋଽର୍ଥତତ୍ତ୍ୱମବିଜ୍ଞାୟ କ୍ରୋଧସ୍ୟୈବ ବଶଂ ଗତଃ ।
ସ ତଥା ତପ୍ୟତେ ମୂଢ଼ୋ, ବ୍ରାହ୍ମଣୋ ନକୁଳାଦ୍ ଯଥା । ୧୦୦ ।

ଯେଉଁ ଲୋକ ପ୍ରକୃତ ଅବସ୍ଥା ନ ଜାଣି କ୍ରୋଧପରବଶ ହୁଏ, ବ୍ରାହ୍ମଣ ନକୁଳକୁ ବଧ କରି ଅନୁତାପ କଲା ପରି ସେ ଅନୁତାପ କରେ । ୧୦୦ ।

ରାଜା କହିଲେ—ସେ କଥା କିପରି ?

ଦୂରଦର୍ଶୀ କହିଲା—

## କଥା-୧୧

ଉଜ୍ଜୟିନୀରେ ମାଧବ ନାମରେ ଜଣେ ବ୍ରାହ୍ମଣ ଥିଲେ । ତାଙ୍କର ପତ୍ନୀ ଗୋଟିଏ ସନ୍ତାନ ପ୍ରସବ କଲେ । ବ୍ରାହ୍ମଣୀ ଶିଶୁ ସନ୍ତାନର ରକ୍ଷା ନିମନ୍ତେ ବ୍ରାହ୍ମଣଙ୍କୁ ରଖାଇ ସ୍ନାନ କରିବାକୁ ଗଲେ । ଏହି ସମୟରେ ପାର୍ବଣ ଶ୍ରାଦ୍ଧର ଦାନ ଗ୍ରହଣ କରିବା ପାଇଁ ବ୍ରାହ୍ମଣଙ୍କୁ ରାଜାଙ୍କର ଡାକରା ଆସିଲା । ବ୍ରାହ୍ମଣ ସହଜେ ଦରିଦ୍ର । ଡାକରା

ଶୁଣି ବ୍ରାହ୍ମଣ ଚିନ୍ତା କଲେ, 'ଯଦି ଶୀଘ୍ର ନ ଯାଏଁ, ତେବେ ଅନ୍ୟ କେହି ଶୁଣିପାରି ଦାନ ନେଇ ଆସିବ । ଯେହେତୁ—

ଆଦେୟସ୍ୟ ପ୍ରଦେୟସ୍ୟ କର୍ତ୍ତବ୍ୟସ୍ୟ ଚ କର୍ମଣଃ ।
କ୍ଷିପ୍ରମକ୍ରିୟମାଣସ୍ୟ କାଳଃ ପିବତି ତଦ୍ରସମ୍ । ୧୦୧ ।

ଯାହା ଆଣିବାର, ଦେବାର, ବା କରିବାର କଥା ତାହା ଶୀଘ୍ର ନ କଲେ କାଳ ତାହାର ରସକୁ ପିଇଯାଏ (ଅର୍ଥାତ୍ ଉଚିତ ସମୟ ଗୁଲିଯିବାରୁ କାର୍ଯ୍ୟ ନଷ୍ଟ ହୁଏ) । ୧୦୧ ।

କିନ୍ତୁ ଏଠାରେ ଶିଶୁଟିକୁ ରକ୍ଷା କରିବାକୁ କେହି ନାହିଁ । ଅତଏବ କଅଣ କରିବ ? ଆଚ୍ଛା, ଏହି ନେଉଳକୁ ମୁଁ ବହୁକାଳରୁ ପୁତ୍ରପରି ପାଳି ଆସିଅଛି । ଏହାକୁ ଶିଶୁର ରକ୍ଷାପାଇଁ ନିଯୁକ୍ତ କରି ଯିବି ।' ତାହାହିଁ କରି ବ୍ରାହ୍ମଣ ଗୁଲିଗଲେ । ଏହି ସମୟରେ ନକୁଳ ଦେଖିଲି ଯେ ଗୋଟିଏ କୃଷ୍ଣସର୍ପ ଶିଶୁ ନିକଟକୁ ଆସୁଅଛି । ନେଉଳ କ୍ରୋଧରେ ତାକୁ ଖଣ୍ଡ ଖଣ୍ଡ କରି ବଧ କଲା ଓ ଖାଇଲା । ବ୍ରାହ୍ମଣ ଫେରିବାର ଦେଖି ନକୁଳ ଶୀଘ୍ର ଯାଇ ତାଙ୍କର ପାଦତଳେ ଲୋଟି-ଗଲା । ନକୁଳର ମୁଖ ଓ ପାଦରେ ରକ୍ତ ଲାଗିଥିବାର ଦେଖି ବ୍ରାହ୍ମଣ ସ୍ଥିର କଲେ 'ଏହି ନେଉଳ ଶିଶୁକୁ ଖାଇଅଛି' ଏବଂ ତାକୁ ବଧ କଲେ ।

ଏହାପରେ ବ୍ରାହ୍ମଣ ଗୃହରେ ପ୍ରବେଶ କରି ଦେଖିଲେ, ଶିଶୁ ନିଶ୍ଚିନ୍ତରେ ଶୋଇଛନ୍ତି ଓ ମଲାସାପ ପଡ଼ିଛି । ତହୁଁ ସେହି ଉପକାରୀ ମୃତ ନେଉଳକୁ ଗୁହିଁ ବ୍ରାହ୍ମଣ ଚିନ୍ତାକୁଳ ହୋଇ ଅତ୍ୟନ୍ତ ଦୁଃଖ ଅନୁଭବ କଲେ । ଏହି ହେତୁରୁ ମୁଁ କହୁଥିଲି, ଯେଉଁ ଲୋକ ପ୍ରକୃତ ଅବସ୍ଥା ନ ଜାଣି—ଇତ୍ୟାଦି । ଏହାଛଡ଼ା—

କାମଃ, କ୍ରୋଧସ୍ତଥା ମୋହୋ, ଲୋଭୋ, ମାନୋ, ମଦସ୍ତଥା ।
ଷଡ୍‌ବର୍ଗମୁତ୍ସୃଜେଦେନମସ୍ମିଂସ୍ତ୍ୟକ୍ତେ ସୁଖୀ ନୃପଃ । ୧୦୨ ।

ରାଜାଙ୍କର ଉଚିତ ହେଉଛି ସେ କାମ, କ୍ରୋଧ, ମୋହ, ଲୋଭ, ମାନ ତଥା ମଦ ଏହି ଷଡ୍‌ବର୍ଗକୁ ତ୍ୟାଗ କରିବେ । ଏଗୁଡ଼ିକୁ ତ୍ୟାଗକରି ପାରିଲେ ରାଜା ସୁଖୀ ହୁଅନ୍ତି । ୧୦୨ ।

ରାଜା କହିଲେ, 'ତେବେ ଏହାହିଁ ତୁମର ନିଶ୍ଚୟ (ସିଦ୍ଧାନ୍ତ) ?'

ମନ୍ତ୍ରୀ କହିଲେ, "ହଁ ତାହାହିଁ ମୋର ନିଶ୍ଚୟ । କାରଣ—

ସ୍ମୃତିସ୍ତତ୍ପରତାର୍ଥେଷୁ, ବିତର୍କୋ, ଜ୍ଞାନନିଶ୍ଚୟଃ ।
ଦୃଢ଼ତା, ମନ୍ତ୍ରଗୁପ୍ତିଶ୍ଚ, ମନ୍ତ୍ରିଣଃ ପରମୋ ଗୁଣଃ । ୧୦୩ ।

ସ୍ମରଣ ଶକ୍ତି, କାର୍ଯ୍ୟରେ ତତ୍ପରତା, କର୍ତ୍ତବ୍ୟାକର୍ତ୍ତବ୍ୟ ବିଚାର, ଦୃଢ଼ଜ୍ଞାନ, ସ୍ୱକାର୍ଯ୍ୟରେ ଦୃଢ଼ତା, ମନ୍ତ୍ରଣାର ଗୋପନୀୟତା— ଏଗୁଡ଼ିକ ହେଉଛି ମନ୍ତ୍ରୀର ପ୍ରଧାନ ଗୁଣ । ୧୦୩ । ପୁଣି—

ସହସା ବିଦଧୀତ ନ କ୍ରିୟା-
ମବିବେକଃ ପରମାପଦାଂ ପଦମ୍ ।
ବୃଣତେ ହି ବିମୃଶ୍ୟକାରିଣଂ
ଗୁଣଲୁବ୍‌ଧାଃ ସ୍ୱୟମେବ ସମ୍ପଦଃ । ୧୦୪ ।

ସହସା କୌଣସି କାର୍ଯ୍ୟ କରିବା ଉଚିତ ନୁହେଁ । ଅବି-ବେକତା ଘୋର ବିପତ୍ତିର କାରଣ ହୋଇଥାଏ । ସମ୍ପଦ ଗୁଣର ଅନୁସରଣ କରିଥାଏ; ତେଣୁ ଏହା ବିବେକୀ ପୁରୁଷକୁ ବରଣ କରି ନିଏ । ୧୦୪ ।

ମହାରାଜ ! ଯଦି ମୋ ପରାମର୍ଶ ଅନୁସାରେ କାର୍ଯ୍ୟ କରନ୍ତି, ତେବେ ପ୍ରଥମେ ସନ୍ଧି କରିବାକୁ ଯାଆନ୍ତୁ । କାରଣ—

ଯଦ୍ୟପ୍ୟୁପାୟାଶ୍ଚତ୍ୱାରୋ ନିର୍ଦ୍ଦିଷ୍ଟାଃ ସାଧ୍ୟସାଧନେ ।
ସଂଖ୍ୟାମାତ୍ରଂ ଫଳଂ ତେଷାଂ ସିଦ୍ଧିଃ ସାମ୍ନି ବ୍ୟବସ୍ଥିତା । ୧୦୫ ।

କାର୍ଯ୍ୟସିଦ୍ଧି ନିମନ୍ତେ ସାମ, ଦାନ, ଭେଦ ଓ ଦଣ୍ଡ ଏହି ଚାରୋଟି ଉପାୟ ନିର୍ଦ୍ଦିଷ୍ଟ ହୋଇଥିଲେହେଁ ବାସ୍ତବରେ 'ସାମ' ଦ୍ୱାରାହିଁ ସିଦ୍ଧି ଲାଭ ହୋଇଥାଏ । ଅନ୍ୟ ତିନୋଟି କେବଳ ସଂଖ୍ୟା ପୂରଣପାଇଁ ଗ୍ରହଣ କରାଯାଇଅଛି ।" ୧୦୫ ।

ରାଜା କହିଲେ, "ଶୀଘ୍ର ସନ୍ଧି ସ୍ଥାପନ କରିବା କିପରି ସମ୍ଭବ ହୋଇପାରେ ?"

ମନ୍ତ୍ରୀ କହିଲେ, "ମହାରାଜ ! ଶୀଘ୍ର ହୋଇ ପାରିବ । କାରଣ—

ମୃଦ୍ଘଟବତ୍ ସୁଖଭେଦ୍ୟୋ
ଦୁଃସନ୍ଧାନଶ୍ଚ ଦୁର୍ଜନୋ ଭବତି ।
ସୁଜନସ୍ତୁ କନକ ଘଟବଦ୍
ଦୁର୍ଭେଦ୍ୟଶ୍ଚାଽଶୁ ସନ୍ଧେୟଃ । ୧୦୬ ।

ଦୁର୍ଜନ ମାଟିର କଳସୀ ପରି ଧଡକରେ ଭାଙ୍ଗି ଯାଇପାରେ, କିନ୍ତୁ ଯୋଡ଼ହେବା ଅତି କଠିନ । କିନ୍ତୁ ସଜ୍ଜନ ସୁନାର କଳସୀପରି; ଅତି କଷ୍ଟରେ ଭାଙ୍ଗେ ମାତ୍ର ଶୀଘ୍ର ଯୋଡ଼ି ହୋଇପାରେ । ୧୦୬ ।

ଅଜ୍ଞଃ ସୁଖମାରାଧ୍ୟଃ, ସୁଖତରମାରାଧ୍ୟତେ ବିଶେଷଜ୍ଞଃ ।
ଜ୍ଞାନଲବଦୁର୍ବିଦଗ୍ଧଂ ବ୍ରହ୍ମାଽପି ତଂ ନରଂ ନ ରଞ୍ଜୟତି । ୧୦୭ ।

ମୂର୍ଖକୁ ସହଜେ ବଶୀଭୂତ କରାଯାଇପାରେ; ବିଦ୍ୱାନ୍ ଲୋକକୁ ଆହୁରି ସହଜରେ ବଶୀଭୂତ କରାଯାଇପାରେ । କିନ୍ତୁ ସ୍ୱଳ୍ପଜ୍ଞାନରେ ଗର୍ବିତ ଲୋକକୁ ସ୍ୱୟଂ ବ୍ରହ୍ମା ମଧ୍ୟ ସନ୍ତୁଷ୍ଟ କରିପାରିବେ ନାହିଁ ।୧୦୭।

ବିଶେଷତଃ ସେ ରାଜା ହେଉଛନ୍ତି ଧର୍ମପରାୟଣ । ତାଙ୍କର ମନ୍ତ୍ରୀ ମଧ୍ୟ ସେହିପରି ଧାର୍ମିକ । ଏ କଥା ମୁଁ ମେଘବର୍ଣ୍ଣର କଥାରୁ ଓ ତାଙ୍କର କାର୍ଯ୍ୟରୁ ଜାଣିପାରିଛି । ଯେହେତୁ—

କର୍ମାନୁମେୟାଃ ସର୍ବତ୍ର ପରୋକ୍ଷ-ଗୁଣ-ବୃତ୍ତୟଃ ।
ତସ୍ମାତ୍ ପରୋକ୍ଷବୃତ୍ତୀନାଂ ଫଳୈଃକର୍ମାନୁଭାବ୍ୟତେ । ୧୦୮ ।

ଆଖି ଆଗରେ ନ ଥିବା ଲୋକର ଗୁଣ ଓ ସ୍ୱଭାବ ତାହାର କାର୍ଯ୍ୟରୁ ଅନୁମାନ କରାଯାଏ । ତେଣୁ ସେ ଭଳି ଲୋକଙ୍କର କାର୍ଯ୍ୟ ତାହାର ଫଳରୁ ଅନୁମାନ କରାଯାଇ ପାରିବ ।'' ୧୦୮ ।

ରାଜା କହିଲେ, ''ଏପରି ତର୍କ ବିତର୍କ ନିଷ୍ପ୍ରୟୋଜନ । ତୁମର ଯାହା ଇଚ୍ଛା ତାହା କର ।'' ଏହିପରି ମନ୍ତ୍ରଣା କରି ମହାମନ୍ତ୍ରୀ ଗୃଧ୍ର କହିଲେ, ''ଏ ବିଷୟରେ ଯାହା ଉଚିତ ବୋଧ ହେବ, ତାହା କରିବି ।'' ଏହା କହି ସେ ଦୁର୍ଗଭିତରକୁ ଚାଲିଗଲେ । ତତ୍ପରେ ଗୁପ୍ତଚର ବକ ରାଜା ହିରଣ୍ୟଗର୍ଭଙ୍କ ନିକଟକୁ ଆସି ଜଣାଇଲା, ''ମହାରାଜ ! ମହାମନ୍ତ୍ରୀ ଗୃଧ୍ର ସନ୍ଧି କରିବାପାଇଁ ଆମ ପାଖକୁ ଆସୁଛନ୍ତି ।'' ରାଜହଂସ କହିଲେ, ''ମନ୍ତ୍ରୀ, କି ଅଭିସନ୍ଧି ରଖି ପୁଣି ସେ ଏଠାକୁ ଆସୁଛି ?'' ସର୍ବଜ୍ଞ ହସି ହସି କହିଲେ, ''ମହାରାଜ ! ଏଥିରେ ଆଶଙ୍କାର କାରଣ ନାହିଁ । କାରଣ ସେ ଉଦାରମନା । ଅଥବା ମନ୍ଦବୁଦ୍ଧି ଲୋକମାନଙ୍କର ପ୍ରକୃତି ଏହିପରି ହୋଇଥାଏ । ସେମାନେ କେତେବେଳେ ଆଦୌ ଆଶଙ୍କା କରନ୍ତି ନାହିଁ; ପୁଣି ଆଉ କେତେବେଳେ ସବୁଠାରେ ଆଶଙ୍କା କରନ୍ତି । କାରଣ—

ସରସି ବହୁଶସ୍ତାରାଚ୍ଛାୟେ କ୍ଷଣାତ୍ ପରିବଞ୍ଚିତଃ
କୁମୁଦବିଟପାନ୍ୱେଷୀ ହଂସୋ ନିଶାସ୍ୱବିଚକ୍ଷଣଃ ।
ନ ଦଶତି ପୁନସ୍ତାରାଶଙ୍କୀ ଦିବାଽପି ସିତୋତ୍ପଲଂ
କୁହକ ଚକିତୋ ଲୋକଃ ସତ୍ୟେଽପ୍ୟପାୟମପେକ୍ଷତେ । ୧୦୯ ।

ଯେପରି ରାତିରେ କୁମୁଦମାନଙ୍କୁ ଅନ୍ୱେଷଣ କରୁଥିବା ନିର୍ବୋଧ ହଂସ ପୁଷ୍କରିଣୀରେ ତାରାମାନଙ୍କର ପ୍ରତିବିମ୍ବ ଦ୍ୱାରା ପ୍ରତାରିତ ହୋଇ ଦିନରେ ସୁଦ୍ଧା ଶୁଭ୍ର ପଦ୍ମକୁ ତାରା ବୋଲି ଆଶଙ୍କା କରି ତାକୁ ଭକ୍ଷଣ କରେ ନାହିଁ, ସେହିପରି କପଟାଚରଣଦ୍ୱାରା ପ୍ରତାରିତ ଲୋକ ସତ୍ୟ ବିଷୟରେ ମଧ୍ୟ ବିପଦ ଆଶଙ୍କା କରିଥାଏ । ୧୦୯ ।

ଦୁର୍ଜନଦୂଷିତମନସଃ ସୁଜନେଷ୍ୱପି ନାଽସ୍ତି ବିଶ୍ୱାସଃ ।
ବାଳଃ ପାୟସଦଗ୍ଧୋ ଦଧିପି ଫୁତ୍କୃତ୍ୟ ଭକ୍ଷୟତି । ୧୧୦ ।

ଦୁର୍ଜନଦ୍ୱାରା ପ୍ରବଞ୍ଚିତ ଲୋକ ସଜ୍ଜନମାନଙ୍କଠାରେ ସୁଦ୍ଧା ବିଶ୍ୱାସ ରଖେ ନାହିଁ । ଯେଉଁ ବାଳକର ପାଟି ଦୁଧ ପିଇଲାବେଳେ ପୋଡ଼ି ଯାଇଥାଏ, ସେ ଦହିକୁ ସୁଦ୍ଧା ଫୁଙ୍କି ଫୁଙ୍କି ଖାଏ । ୧୧୦ ।

ମହାରାଜ ! ଏହି ହେତୁରୁ ତାଙ୍କର ସମ୍ମାନାର୍ଥେ ଯଥାଶକ୍ତି ରତ୍ନ ପ୍ରଭୃତି ଉପହାର ସଜାଡ଼ି ରଖନ୍ତୁ ।" ତାହା ହିଁ କରାଗଲା । ତଦନନ୍ତର ମନ୍ତ୍ରୀ ଚକ୍ରବାକ ଦୁର୍ଗଦ୍ୱାରକୁ ଆସି ଗୃଧ୍ରକୁ ସମ୍ମାନ ସହକାରେ ଆଣି ରାଜଦର୍ଶନ କରାଇଲେ । ଗୃଧ୍ର ଆସନରେ ବସିଲା । ଚକ୍ରବାକ କହିଲେ, "ହେ ମନ୍ତ୍ରୀ ! ଏଠାରେ ଯାହା କିଛି ଅଛି, ସେ ଆପଣଙ୍କର ଅଧୀନ । ସ୍ୱେଚ୍ଛାନୁସାରେ ଏହି ରାଜ୍ୟ ଭୋଗ କରନ୍ତୁ ।" ରାଜହଂସ କହିଲେ, "ସେ କଥା ଠିକ୍ ।" ଦୂରଦର୍ଶୀ ଗୃଧ୍ର କହିଲେ, "ସେ କଥା ଠିକ୍; କିନ୍ତୁ ଏ ସମୟରେ ସେପରି ପ୍ରଶଂସା କରି କହିବା ଅନାବଶ୍ୟକ । କାରଣ—

ଲୁବ୍ଧମର୍ଥେନ ଗୃହ୍ଣୀୟାତ୍, ସ୍ତବ୍ଧମଞ୍ଜଳିକର୍ମଣା
ମୂର୍ଖଂ ଛନ୍ଦାନୁରୋଧେନ ଯାଥାତଥ୍ୟେନ ପଣ୍ଡିତମ୍ । ୧୧୧ ।

ଲୋଭୀ ଲୋକକୁ ଧନଦ୍ୱାରା, ଗର୍ବୋଦ୍ଧତ ଲୋକକୁ ବଦ୍ଧାଞ୍ଜଳି ପୂର୍ବକ ଅନୁନୟ ଦ୍ୱାରା, ମୂର୍ଖକୁ ତାର ଅନୁକୂଳ ବ୍ୟବହାର ଦ୍ୱାରା ଓ ପଣ୍ଡିତମାନଙ୍କୁ ସତ୍ୟ ବାକ୍ୟଦ୍ୱାରା ବଶ କରିବା ଉଚିତ । ୧୧୧। ପୁଣି—

ସଦ୍‌ଭାବେନ ହରେନ୍ମିତ୍ରଂ,
ସମ୍ଭ୍ରମେଣ ତୁ ବାନ୍ଧବାନ୍ ।
ସ୍ତ୍ରୀ-ଭୃତ୍ୟୌ ଦାନ-ମାନାଭ୍ୟାଂ
ଦାକ୍ଷିଣ୍ୟେନେତରାନ୍ ଜନାନ୍ । ୧୧୨ ।

ମିତ୍ରକୁ ସଦ୍‌ଭାବ ଦ୍ୱାରା, ବାନ୍ଧବମାନଙ୍କୁ ଆଦର ଗୌରବ ଦ୍ୱାରା, ସ୍ତ୍ରୀ ଓ ଭୃତ୍ୟକୁ ଦାନ ଓ ମାନ ଦ୍ୱାରା ଏବଂ ଅନ୍ୟ ଲୋକମାନଙ୍କୁ ଉଦାରତାଦ୍ୱାରା ନିଜର ଅନୁରକ୍ତ କରିବା ଉଚିତ । ୨୧୨ ।

ଏଣୁ ବର୍ତ୍ତମାନ ସନ୍ଧି କରିବା ନିମନ୍ତେ ଚାଲନ୍ତୁ । ଚିତ୍ରବର୍ଣ୍ଣ ମହାପ୍ରତାପୀ ରାଜା ଅଟନ୍ତି ।"

ଚକ୍ରବାକ କହିଲେ, "କି ପ୍ରକାରର ସନ୍ଧି କରିବାକୁ ହେବ, କହନ୍ତୁ ।" ରାଜହଂସ କହିଲେ, "ସନ୍ଧି କେତେ ପ୍ରକାରର ହୋଇପାରେ ?" ଗୃଧ୍ର କହିଲେ—

ବଳୀୟସାଽଭିଯୁକ୍ତସ୍ତୁ ନୃପୋ ନାଽନ୍ୟପ୍ରତିକ୍ରିୟଃ ।
ଆପନ୍ନଃ ସନ୍ଧିମନ୍ୱିଚ୍ଛେତ୍ କୁର୍ବାଣଃ କାଳଯାପନମ୍ । ୧୧୩ ।

ବଳବାନ୍ ଶତ୍ରୁଦ୍ୱାରା ଆକ୍ରାନ୍ତ ହେବାରୁ ଅନ୍ୟ ଉପାୟ ନ ଦେଖି ବିପନ୍ନ ରାଜା କାଳଯାପନ ନିମନ୍ତେ ସନ୍ଧି କରିବା ଉଚିତ । ୧୧୩ ।

କପାଳ, ଉପହାରଶ୍ଚ, ସନ୍ତାନଃ, ସଙ୍ଗତସ୍ତଥା ।
ଉପନ୍ୟାସଃ, ପ୍ରତୀକାରଃ, ସଂଯୋଗଃ, ପୁରୁଷାନ୍ତରଃ । ୧୧୪ ।
ଅଦୃଷ୍ଟନର, ଆଦିଷ୍ଟ, ଆତ୍ମାଽଦିଷ୍ଟ, ଉପଗ୍ରହଃ ।
ପରିକ୍ରୟ ସ୍ତଥୋଚ୍ଛିନ୍ନସ୍ତଥା ଚ ପରଭୂଷଣଃ । ୧୧୫ ।
ସ୍କନ୍ଧୋପନେୟଃ, ସନ୍ଧିଶ୍ଚ, ଷୋଡ଼ଶୈତେ ପ୍ରକୀର୍ତ୍ତିତାଃ
ଇତି ଷୋଡ଼ଶକଂ ପ୍ରାହୁଃ ସନ୍ଧିଂ ସନ୍ଧିବିଚକ୍ଷଣାଃ । ୧୧୬ ।

କପାଳ, ବ୍ୟବହାର, ସନ୍ତାନ, ସଙ୍ଗତ, ଉପନ୍ୟାସ, ପ୍ରତୀକାର, ସଂଯୋଗ, ପୁରୁଷାନ୍ତର, ଅଦୃଷ୍ଟନର, ଆଦିଷ୍ଟ, ଆତ୍ମାଦିଷ୍ଟ, ଉପଗ୍ରହ, ପରିକ୍ରୟ, ଉଚ୍ଛିନ୍ନ, ପରଭୂଷଣ ଓ ସ୍କନ୍ଧୋପନେୟ—ସନ୍ଧି ଏହିପରି ଷୋଳ ପ୍ରକାରର ବୋଲି ବିଦ୍ୱାନ୍ ଲୋକେ କହିଥାନ୍ତି । ୧୧୪-୧୧୬ ।

କପାଳସନ୍ଧିର୍ବିଜ୍ଞେୟଃ କେବଳଂ ସମସନ୍ଧିତଃ ।
ସମ୍ପ୍ରଦାନାଦ୍ ଭବତି ଯ ଉପହାରଃ ସ ଉଚ୍ୟତେ । ୧୧୭ ।

ସମବଳ ବିଶିଷ୍ଟ ଦୁଇ ଜଣଙ୍କ ମଧ୍ୟରେ ଯେଉଁ ସନ୍ଧି ହୁଏ, ତାହାର ନାମ କପାଳ ସନ୍ଧି । ଉପହାରାଦି ପ୍ରଦାନପୂର୍ବକ ଯେଉଁ ସନ୍ଧି କରାଯାଏ, ତାହା ଉପହାର ସନ୍ଧି ନାମରେ କଥିତ ହୁଏ । ୧୧୭ ।

ସନ୍ତାନସନ୍ଧିର୍ବିଜ୍ଞେୟୋ ଦାରିକାଦାନପୂର୍ବକଃ ।
ସଦ୍ଭିସ୍ତୁ ସଙ୍ଗତଃ ସନ୍ଧିର୍ମୈତ୍ରୀପୂର୍ବଂ ଉଦାହୃତଃ । ୧୧୮ ।

ଅପର ପକ୍ଷକୁ କନ୍ୟାଦାନ କରି ଯେଉଁ ସନ୍ଧି କରାଯାଏ, ତାହାର ନାମ ସନ୍ତାନ ସନ୍ଧି ଓ ଉଭୟ ସଜ୍ଜନଙ୍କ ମଧ୍ୟରେ ପରସ୍ପର ମୈତ୍ରୀଭାବରୁ ଯେଉଁ ସନ୍ଧି ହୁଏ, ତାହା ସଙ୍ଗତ ସନ୍ଧି ନାମରେ କଥିତ । ୧୧୮ ।

ଯାବଦାୟୁଃପ୍ରମାଣସ୍ତୁ ସମାନାର୍ଥପ୍ରୟୋଜନଃ
ସମ୍ପତ୍ତୌ ବା, ବିପତ୍ତୌ ବା, କାରଣୈର୍ଯୋ ନ ଭିଦ୍ୟତେ । ୧୧୯ ।

ସମାନ ଅର୍ଥ ବା ପ୍ରୟୋଜନ ହେତୁରୁ ଯାବଜ୍ଜୀବନ ସମ୍ପଦ-କାଳରେ ହେଉ ବା ବିପଦକାଳରେ ହେଉ ବା ଅନ୍ୟ କୌଣସି କାରଣରୁ ହେଉ ଏହି ସଙ୍ଗତ ସନ୍ଧି କେବେ ଛିନ୍ନ ହୁଏ ନାହିଁ । ୧୧୯ ।

ସଙ୍ଗତଃ ସନ୍ଧିରେବାଽୟଂ ପ୍ରକୃଷ୍ଟତ୍ୱାତ୍ ସୁବର୍ଣ୍ଣବତ୍ ।
ତଥାଽନ୍ୟୈଃ ସନ୍ଧିକୁଶଲୈଃ 'କାଞ୍ଚନଃ' ସମୁଦାହୃତଃ । ୧୨୦ ।

ଏହି ସଙ୍ଗତ ସନ୍ଧି ଉତ୍କର୍ଷ ହେତୁ ସ୍ୱର୍ଣ୍ଣତୁଲ୍ୟ ହୋଇଥିବାରୁ ଅନ୍ୟ ସନ୍ଧିକୁଶଳ ରାଜନୀତିଜ୍ଞମାନେ ଏହାକୁ କାଞ୍ଚନ ସନ୍ଧି ମଧ୍ୟ କହି-ଅଛନ୍ତି । ୧୨୦ ।

ଆତ୍ମକାର୍ଯ୍ୟସ୍ୟ ସିଦ୍ଧିଂ ତୁ ସମୁଦ୍ଦିଶ୍ୟ କ୍ରିୟେତ ଯଃ ।
ସ ଉପନ୍ୟାସ କୁଶଳୈରୁପନ୍ୟାସ ଉଦାହୃତଃ । ୧୨୧ ।

ନିଜର କାର୍ଯ୍ୟସିଦ୍ଧି ଉଦ୍ଦେଶ୍ୟ ରଖି ଯେଉଁ ସନ୍ଧି କରାଯାଏ, ସନ୍ଧି କୁଶଳ ରାଜନୀତିଜ୍ଞମାନଙ୍କଦ୍ୱାରା ତାହା ଉପନ୍ୟାସ ସନ୍ଧି ନାମରେ ବିଦିତ । ୧୨୧ ।

ମୟାଽସ୍ୟୋପକୃତଂ ପୂର୍ବଂ, ଯମାପ୍ୟେଷ କରିଷ୍ୟତି ।
ଇତି ଯଃ କ୍ରିୟତେ ସନ୍ଧିଃ 'ପ୍ରତୀକାରଃ' ସ ଉଚ୍ୟତେ । ୧୨୨ ।

ମୁଁ ପୂର୍ବେ ଏହାଙ୍କର ଉପକାର କରିଥିଲି; ସେ ମଧ୍ୟ ମୋର ଉପକାର କରିବେ—ଏହି ଦୃଷ୍ଟିରୁ ଯେଉଁ ସନ୍ଧି କରାଯାଏ ତାହା ପ୍ରତୀକାର ସନ୍ଧି ରୂପେ କଥିତ । ୧୨୨ ।

ଉପକାରଂ କରୋମ୍ୟସ୍ୟ ମମାପ୍ୟେଷ କରିଷ୍ୟତି ।
ଅୟଂ ଚାପି ପ୍ରତୀକାରୋ ରାମସୁଗ୍ରୀବୟୋରିବ । ୧୨୩ ।

ମୁଁ ଏହାଙ୍କର ଉପକାର କରୁଛି, ସେ ମଧ୍ୟ ମୋର ଉପକାର କରିବେ—ଏହି ଦୃଷ୍ଟିରୁ ରାମ ଓ ସୁଗ୍ରୀବଙ୍କ ମଧ୍ୟରେ ଯେଉଁ ପ୍ରକାରର ସନ୍ଧି ହୋଇଥିଲା ତାର ନାମ ପ୍ରତୀକାର ସନ୍ଧି ।

ଏକାର୍ଥାଂ ସମ୍ୟଗୁଦ୍ଦିଶ୍ୟ କ୍ରିୟାଂ ଯତ୍ର ହି ଗଚ୍ଛତଃ ।
ସୁସଂହିତପ୍ରୟାଣସ୍ତୁ ସ ଚ ସଂଯୋଗ ଉଚ୍ୟତେ । ୧୨୪ ।

ଯେଉଁଠାରେ ସମାନ ସିଦ୍ଧିଲାଭପାଇଁ ସମ୍ପୂର୍ଣ୍ଣ ଲକ୍ଷ୍ୟରେ ସୁନ୍ଦରଭାବରେ ମିଳି (ଆକ୍ରମଣ) କାର୍ଯ୍ୟ କରାଯାଏ ତାହା ସଂଯୋଗ ସନ୍ଧି ନାମରେ ପରିଚିତ । ୧୨୪ ।

ଆବୟୋର୍ଯୋଧମୁଖ୍ୟୈସ୍ତୁ ମଦର୍ଥଃ ସାଧ୍ୟତାମିତି ।
ଯସ୍ମିନ୍ ପଣସ୍ତୁ କ୍ରିୟତେ ସ ସନ୍ଧିଃ ପୁରୁଷାନ୍ତରଃ । ୧୨୫ ।

ଆମର ସେନା ଓ ତୁମର ସେନା ପରସ୍ପରକୁ ସାହାଯ୍ୟ କରିବେ—ଯେଉଁଠାରେ ଏହି ପ୍ରକାର ସର୍ତ୍ତ ରଖି ସନ୍ଧି କରାଯାଏ, ତାହା ହେଉଛି ପୁରୁଷାନ୍ତର ସନ୍ଧି । ୧୨୫ ।

ତ୍ୱୟୈକେନ ମଦୀୟୋଽର୍ଥଃ ସମ୍ପ୍ରସାଧ୍ୟସ୍ତ୍ୱସାବିତି ।
ଯତ୍ର ଶତ୍ରୁଃ ପଣଂ କୁର୍ଯ୍ୟାତ୍ ସୋଽଦୃଷ୍ଟପୁରୁଷ ସ୍ମୃତଃ । ୧୨୬ ।

'ତୁମକୁ ଏକାକୀ ମୋର କାର୍ଯ୍ୟ ସମ୍ପାଦନ କରିବାକୁ ହେବ' ଏହି ସର୍ତ୍ତରେ ଯେଉଁ ସନ୍ଧି କରାଯାଏ, ତାହାର ନାମ ଅଦୃଷ୍ଟପୁରୁଷ ସନ୍ଧି । ୧୨୬ ।

ଯତ୍ର ଭୂମ୍ୟେକଦେଶେନ ପଣେନ ରିପୁରୂର୍ଜିତ ।
ସନ୍ଧୀୟତେ ସନ୍ଧିବଦ୍‌ଭିଃ ସ ଚାଦଦିଷ୍ଟ ଉଦାହୃତ । ୧୨୭ ।

ରାଜ୍ୟର ଏକ ଅଂଶ ଦେବା ସର୍ତ୍ତରେ ବଳବାନ୍ ଶତ୍ରୁ ସହିତ ଯେଉଁ ସନ୍ଧି ହୁଏ, ସେ ସନ୍ଧି ଆଦଷ୍ଟସନ୍ଧି ବୋଲି କଥିତ । ୧୨୭ ।

ସ୍ୱସୈନ୍ୟେନ ତୁ ସନ୍ଧାନମାତ୍ମାଦିଷ୍ଟ ଉଦାହୃତଃ ।
କ୍ରିୟତେ ପ୍ରାଣରକ୍ଷାର୍ଥଂ ସର୍ବଦାନାଦୁପଗ୍ରହଃ । ୧୨୮ ।

ନିଜର ସୈନ୍ୟମାନଙ୍କୁ ଦେଇ ପ୍ରାଣରକ୍ଷା ପାଇଁ ଯେଉଁ ସନ୍ଧି କରାଯାଏ, ତାହାକୁ ଆତ୍ମାଦିଷ୍ଟ ସନ୍ଧି କୁହାଯାଏ ଓ ସର୍ବରେ ନିଜର ସର୍ବସ୍ୱ ଦେଇ ସନ୍ଧି କରାଯାଏ ତାହାକୁ ଉପଗ୍ରହ ସନ୍ଧି କୁହା-ଯାଏ । ୧୨୮ ।

କୋଶାଂଶେନାର୍ଦ୍ଧକୋଶେନ ସର୍ବକୋଶେନ ବା ପୁନଃ ।
ଶିଷ୍ଟସ୍ୟ ପ୍ରତିରକ୍ଷାର୍ଥଂ ପରିକ୍ରୟଃ ଉଦାହୃତଃ । ୧୨୯ ।

ଶତ୍ରୁ ଅଧିକାର କରି ନେବାପରେ ରାଜ୍ୟର ଯାହା ଅବଶିଷ୍ଟ ଥାଏ, ତାହାକୁ ରକ୍ଷା କରିବାପାଇଁ ରାଜଭଣ୍ଡାରର ଏକ ଅଂଶ, ଅର୍ଦ୍ଧେକ ବା ସମସ୍ତ ଭଣ୍ଡାର ଦେଇ ଶତ୍ରୁ ସହିତ ଯେଉଁ ସନ୍ଧି କରାଯାଏ, ତାହାର ନାମ ପରିକ୍ରୟ ସନ୍ଧି । ୧୨୯ ।

ଭୁବାଂ ସାରବତୀନାଂ ତୁ ଦାନାଦୁଚ୍ଛିନ୍ନ ଉଚ୍ୟତେ ।
ଭୂମ୍ୟୁତ୍ଥଫଳଦାନେନ ସର୍ବେଣ ପରିଭୂଷଣଃ । ୧୩୧ ।

ଧନରତ୍ନାଦିପୂର୍ଣ୍ଣ ରାଜ୍ୟ ଦାନକରି ସନ୍ଧି କରାଗଲେ ତାହାକୁ ଉଚ୍ଛିନ୍ନ ସନ୍ଧି କୁହାଯାଏ ଓ ଭୂମିରୁ ଉତ୍ପନ୍ନ ସମସ୍ତ ଫଳ ଦେଇ ଯେଉଁ ସନ୍ଧି କରାଯାଏ, ତାହାକୁ ପରିଭୂଷଣ ସନ୍ଧି କୁହାଯାଏ । ୧୩୦ ।

ସନ୍ତୈର୍ନଂ ଫଳଂ ଯତ୍ର ପ୍ରତ୍ୟସ୍ତବନେନ ଯାଚ୍ୟତେ ।
ସ୍କନ୍ଧୋପନେୟଂ ତଂ ପ୍ରାହୁଃ ସନ୍ଧିଂ ସନ୍ଧିବିଚକ୍ଷଣାଃ । ୧୩୧ ।

ଯେଉଁ ସନ୍ଧିରେ କେତେକ କିସ୍ତିରେ ଧନଧାନ୍ୟାଦି ଦେବାର ସର୍ତ୍ତ ରହିଥାଏ, ତାହାକୁ ସନ୍ଧିକୁଶଳ ଲୋକେ ସ୍କନ୍ଧୋପନେୟ ସନ୍ଧି ବୋଲି କହିଥାନ୍ତି । ୧୩୧ ।

ପରସ୍ପରୋପକାରସ୍ତୁ, ମୈତ୍ରୀ, ସମ୍ବନ୍ଧକସ୍ତଥା ।
ଉପହାରଶ୍ଚ ବିଜ୍ଞେୟାଶ୍ଚତ୍ୱାରଶ୍ଚୈବ ସନ୍ଧୟଃ । ୧୩୨ ।

ପରସ୍ପରର ଉପକାର ସାଧନ, ମିତ୍ରତା, ବିବାହାଦି ସମ୍ବନ୍ଧ ଓ ଉପହାର—ଏହି ଚାରୋଟିକୁ ସନ୍ଧି ବୋଲି ଜାଣିବ । ୧୩୨ ।

ଏକ ଏବୋପହାରସ୍ତୁ ସନ୍ଧିରେବ ମତୋ ମମ ।
ଉପହାରବିଭେଦାସ୍ତୁ ସର୍ବେ ମୈତ୍ରବିବର୍ଜିତାଃ । ୧୩୩ ।

ମୋ ମତରେ ଉପହାର ସନ୍ଧି ହିଁ ଏକମାତ୍ର ସନ୍ଧି । ମୈତ୍ରକୁ ଛାଡ଼ିଦେଲେ ଅନ୍ୟ ସବୁ ସନ୍ଧି କେବଳ ଉପହାର ସନ୍ଧିର ବିଭେଦ ମାତ୍ର । ୧୩୩ ।

ଅଭିଯୋକ୍ତା ବଳୀୟସ୍ତ୍ୱାଦଲବ୍ଧ୍ୱା ନ ନିବର୍ତ୍ତତେ ।
ଉପହାରାଦୃତେ ତସ୍ମାତ୍ ସନ୍ଧିରନ୍ୟୋ ନ ବିଦ୍ୟତେ । ୧୩୪ ।

ଆକ୍ରମଣକାରୀ ବଳବାନ୍ ହୋଇଥିବାରୁ କିଛି ନ ପାଇଲେ ଫେରିଯାଏ ନାହିଁ । ତେଣୁ ଉପହାର ବିନା ତାହା ସହିତ ଅନ୍ୟ କୌଣସି ପ୍ରକାର ସନ୍ଧି ହୋଇ ନ ପାରେ । ୧୩୪ ।

ରାଜା କହିଲେ, "ଆପଣ ଉଦାର ଓ ବିଦ୍ୱାନ୍ । ତେଣୁ ଏଠାରେ ଆମର କର୍ତ୍ତବ୍ୟ କଅଣ, ଉପଦେଶ ଦିଅନ୍ତୁ ।"

ଦୂରଦର୍ଶୀ କହିଲେ, "ଆଃ, ଏସବୁ କଅଣ କହୁଛନ୍ତି ?"

ଆଧିବ୍ୟାଧିପରୀତାପାଦଦ୍ୟ ଶ୍ୱୋ ବା ବିନାଶିନେ ।
କୋ ହି ନାମ ଶରୀରସ୍ୟ ଧର୍ମାପେତଂ ସମାଚରେତ୍ । ୧୩୫ ।

ମାନସିକ ତଥା ଶାରୀରିକ ପୀଡ଼ାଗ୍ରସ୍ତ ଏହି ଶରୀର ଆଜି ବା କାଲି ବିନଷ୍ଟ ହେବ । ଏମନ୍ତ ଶରୀର ନିମନ୍ତେ କିଏ ଅଧର୍ମ ଆଚରଣ କରିବ ? ୧୩୫ ।

ଜଳାନ୍ତଶ୍ଚନ୍ଦ୍ରଚପଳଂ ଜୀବିତଂ ଖଳୁ ଦେହିନାମ୍ ।
ତଥାବିଧମିତି ଜ୍ଞାତ୍ୱା ଶଶ୍ୱତ୍ କଲ୍ୟାଣମାଚରେତ୍ । ୧୩୬ ।

ପ୍ରାଣୀମାନଙ୍କର ଜୀବନ ଜଳରେ ପ୍ରତିବିମ୍ବିତ ଚନ୍ଦ୍ର ସଦୃଶ ଚଞ୍ଚଳ । ତେଣୁ ଏହାକୁ ବିନାଶଶୀଳ ଜାଣି ନିରନ୍ତର ମଙ୍ଗଳଜନକ କାର୍ଯ୍ୟ କରିବା ଉଚିତ । ୧୩୬ ।

ବାତାଽଭ୍ରବିଭ୍ରମମିଦଂ ବସୁଧାଧିପତ୍ୟ-
ମାପାତମାତ୍ରମଧୁରୋ ବିଷୟୋପଭୋଗଃ ।
ପ୍ରାଣାସ୍ତୃଣାଗ୍ରଜଳବିନ୍ଦୁସମାନଲୋଳା,
ଧର୍ମଃ ସଖା ପରମହୋ ! ପରଲୋକଯାନେ । ୧୩୭ ।

ରାଜ୍ୟାଧିପତ୍ୟ ବାୟୁଦ୍ୱାରା ବିତାଡ଼ିତ ମେଘଖଣ୍ଡ ତୁଲ୍ୟ । ସାଂସାରିକ ବିଷୟର ଉପଭୋଗ ଆପାତମଧୁର ଅଟେ । ତୃଣର ଅଗ୍ର ଭାଗରେ ସ୍ଥିତ ଜଳକଣା ଯେପରି ଚଞ୍ଚଳ, ଜୀବନ ସେହିପରି ଚଞ୍ଚଳ । ହାୟ ! ପରଲୋକ ଯାନାବେଳେ ଧର୍ମହିଁ ଏକମାତ୍ର ସହାୟ । ୧୩୭ ।

ମୃଗତୃଷ୍ଣାସମଂ ବୀକ୍ଷ୍ୟ ସଂସାରଂ କ୍ଷଣଭଙ୍ଗୁରମ୍
ସଜ୍ଜନୈଃ ସଙ୍ଗତଂ କୁର୍ଯ୍ୟାଦ୍ଧର୍ମାୟ ଚ ସୁଖାୟ ଚ । ୧୩୮ ।

ଏହି ସଂସାରକୁ ମୃଗତୃଷ୍ଣା ପରି କ୍ଷଣଭଙ୍ଗୁର ଦେଖି ଧର୍ମ ତଥା ସୁଖ ଲାଭ ନିମନ୍ତେ ସାଧୁସଙ୍ଗମ କରିବା ବିଧେୟ ।। ୧୩୮।

ଅତଏବ ମୋ ମତରେ ଏହିପରି କରନ୍ତୁ । ଯେହେତୁ—

ଅଶ୍ୱମେଧସହସ୍ରାଣି, ସତ୍ୟଂ ଚ ତୁଳୟା ଧୃତମ୍
ଅଶ୍ୱମେଧସହସ୍ରାଣି ସତ୍ୟମେବାଽତିରିଚ୍ୟତେ । ୧୩୯ ।

ସହସ୍ର ଅଶ୍ୱମେଧ ଯଜ୍ଞ ଓ ସତ୍ୟକୁ ତୁଳାଦଣ୍ଡର ଦୁଇ ପାଖରେ ରଖିଲେ ସହସ୍ର ଅଶ୍ୱମେଧ ଯଜ୍ଞଠାରୁ ସତ୍ୟ ଅଧିକ ଭାରି ହେବ । ୧୩୯ ।

ଅତଏବ ସତ୍ୟ-ଶପଥ ପୂର୍ବକ ଏହି ଦୁଇ ରାଜାଙ୍କ ମଧ୍ୟରେ କାଞ୍ଚନ ସନ୍ଧି କରାଯାଉ । ସର୍ବଜ୍ଞ କହିଲେ, "ତାହାହିଁ ହେଉ ।" ତତ୍ପରେ ରାଜା ରାଜହଂସଙ୍କ ପ୍ରଦତ୍ତ ବସ୍ତ୍ରାଳଙ୍କାରାଦି ଦ୍ୱାରା ସମ୍ମାନିତ ହୋଇ ଦୂରଦର୍ଶୀ ପ୍ରସନ୍ନ ମନରେ ଚକ୍ରବାକଙ୍କ ସହିତ ମୟୂରରାଜ ଚିତ୍ରବର୍ଣ୍ଣଙ୍କ ନିକଟକୁ ଗଲେ । ରାଜା ଚିତ୍ରବର୍ଣ୍ଣ ସର୍ବଜ୍ଞଙ୍କୁ ଗୃଧ୍ରର କଥା ଅନୁସାରେ ପ୍ରଚୁର ଦାନ ଓ ଉପହାର ଦେଇ ସନ୍ତୁଷ୍ଟ କରି ଏହି ସନ୍ଧିକୁ ସ୍ୱୀକାର କଲେ ଓ ତାହାକୁ ରାଜହଂସଙ୍କ ନିକଟକୁ ପଠାଇ ଦେଲେ ।

ଦୂରଦର୍ଶୀ କହିଲେ, "ମହାରାଜ, ଆମମାନଙ୍କର ଅଭିଳାଷ ପୂର୍ଣ୍ଣ ହୋଇଅଛି । ବର୍ତ୍ତମାନ ଆମେ ନିଜ ଦେଶ ବିନ୍ଧ୍ୟାଚଳକୁ ଫେରିଯିବା ଉଚିତ ।"

ଏହିପରି ସମସ୍ତେ ନିଜ ନିଜ ଦେଶକୁ ଯାଇ ମନୋବାଞ୍ଛାର ଅନୁରୂପ ଫଳ ଲାଭ କଲେ ।

ବିଷ୍ଣୁଶର୍ମା କହିଲେ, "ତୁମମାନଙ୍କୁ ଆଉ କଅଣ ଶୁଣାଇବି କହ ।"

ରାଜପୁତ୍ରମାନେ କହିଲେ, "ଆର୍ଯ୍ୟ, ଆପଣଙ୍କ ଅନୁଗ୍ରହରୁ ଆମେମାନେ ରାଜ୍ୟବ୍ୟବହାରର ସମସ୍ତ ଅଙ୍ଗ ଜାଣି ପାରିଅଛୁ । ଏଥିରେ ଆମେମାନେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଅଛୁ ।"

ବିଷ୍ଣୁଶର୍ମା କହିଲେ, "ତୁମେମାନେ ସନ୍ତୁଷ୍ଟ ହୋଇଥିଲେ ମଧ୍ୟ ଆହୁରି ଏତିକ ହେଉ ।

ସନ୍ଧିଃ ସର୍ବମହୀଭୁଜାଂ ବିଜୟିନାମସ୍ତୁ, ପ୍ରମୋଦଃ ସଦା,
ସନ୍ତଃ ସନ୍ତୁ ନିରାପଦଃ, ସୁକୃତିନାଂ କୀର୍ତ୍ତିଶ୍ଚିରଂ ବର୍ଦ୍ଧତାମ୍ ।
ନୀତିର୍ବାରବିଳାସିନୀବ ସତତଂ ବକ୍ଷଃସ୍ଥଳେ ସଂସ୍ଥିତା
ବକ୍ତ୍ରଂ ଚୁମ୍ବତୁ ମନ୍ତ୍ରିଣାମହରହର୍ଭୂୟାନ୍ମହାନୁତ୍ସବଃ । ୧୪୦ ।

ସବୁ ରାଜାଙ୍କର ବିଜୟୀ ରାଜାଙ୍କ ସହିତ ସନ୍ଧି ହେଉ; ସର୍ବଦା ଆମୋଦ ହେଉ । ସଜ୍ଜନମାନେ ନିରାପଦ ରହନ୍ତୁ, ବିଦ୍ୱାନ୍ ମାନଙ୍କର ଯଶ ଚିରକାଳ ବିସ୍ତୃତ ହେଉଥାଉ । ମନ୍ତ୍ରୀମାନଙ୍କ ହୃଦୟରେ ରାଜନୀତି ସର୍ବଦା ରୂପାଜୀବା ପରି ଅବସ୍ଥାନ କରି ସେମାନଙ୍କର ମୁଖ ଚୁମ୍ବନ କରୁ; ଅହରହ ମହାନ୍ ଉତ୍ସବ ହେଉ । ୧୪୦ । ପୁଣି ଏହା ମଧ୍ୟ ହେଉ—

ପ୍ରାଲେୟାଦ୍ରେଃ ସୁତାୟାଃ ପ୍ରଣୟିନିବସତି-
ଶ୍ଚନ୍ଦ୍ରମୌଳିଃ ସ ଯାବଦ୍
ଯାବଲ୍ଲକ୍ଷ୍ମୀର୍ମୁରାରେର୍ଜଳଦ ଇବ ତଡ଼-
ନ୍ମାନସେ ବିସ୍ଫୁରନ୍ତୀ ।
ଯାବତ୍ ସ୍ୱର୍ଣ୍ଣାଚଳୋଽୟଂ ଦବଦହନସମୋ
ଯସ୍ୟ ସୂର୍ଯ୍ୟଃ ସ୍ଫୁଲିଙ୍ଗ-
ସ୍ତାବନ୍ନାରାୟଣେନ ପ୍ରଚରତୁ ରଚିତ-
ସଂଗ୍ରହୋଽୟଂ କଥାନାମ୍ । ୧୪୧ ।

ଯେତେଦିନଯାଏ ହିମାଳୟସୁତା ପାର୍ବତୀଙ୍କ ସ୍ତନସ୍ଥରେ ଚନ୍ଦ୍ରଚୂଡ଼ ଶିବ ଆବଦ୍ଧ ଥିବେ, ଯେତେଦିନଯାଏ ଲକ୍ଷ୍ମୀ ମେଘରେ ତଡ଼ିତ୍ ପରି ମୁରାରି (ବିଷ୍ଣୁ)ଙ୍କ ହୃଦୟସ୍ଥରେ ବିରାଜି ଥିବେ, ଯେତେଦିନଯାଏ ହେମକୂଟ ପର୍ବତ (ସୂର୍ଯ୍ୟ ଯାହାର ଏକ ସ୍ଫୁଲିଙ୍ଗ ମାତ୍ର) ଦାବାନଳ-ସଦୃଶ ବିଦ୍ୟମାନ ଥିବ, ଯେତେଦିନ ପର୍ଯ୍ୟନ୍ତ ନାରାୟଣଙ୍କ ବିରଚିତ ଏହି କଥା-ସଂଗ୍ରହ ସଂସାରରେ ପ୍ରଚଳିତ ହେଉଥାଉ । ୧୪୧ ।
ପୁନଶ୍ଚ—

ଉର୍ବୀମୁଦ୍ଦାମସସ୍ୟାଂ ଜନୟତୁ ବିସୃଜନ୍
ବାସବୋ ବୃଷ୍ଟିମିଷ୍ଟା-
ମିଷ୍ଟୈସ୍ତ୍ରୈବିଷ୍ଟପାନାଂ ବିଦଧତୁ ବିଧିବତ୍
ପ୍ରୀଣନଂ ବିପ୍ରମୁଖ୍ୟାଃ ।
ଆକଳ୍ପାନ୍ତଞ୍ଚ ଭୂୟାତ୍ ସ୍ଥିରମୁପଚିତସୁଖଃ
ସଙ୍ଗମଃ ସଜ୍ଜନାନାଂ
ନିଃଶେଷଂ ଯାନ୍ତୁ ଶାନ୍ତିଂ ପିଶୁନଜନଗିରୋ
ଦୁର୍ଜୟା ବଜ୍ରଲେପାଃ । ୧୪୨ ।

ଇନ୍ଦ୍ର ଉପଯୁକ୍ତ ବୃଷ୍ଟିଦ୍ୱାରା ପୃଥିବୀକୁ ଶସ୍ୟପୂର୍ଣ୍ଣ କରନ୍ତୁ । ବ୍ରାହ୍ମଣମାନେ ସେହି ଶସ୍ୟ ଓ ଯଜ୍ଞଦ୍ୱାରା ଲୋକମାନଙ୍କର ଯଥାବିଧି ସନ୍ତୋଷ ବିଧାନ କରନ୍ତୁ । ସଜ୍ଜନମାନଙ୍କର ସଙ୍ଗତି କଳ୍ପାନ୍ତ ପର୍ଯ୍ୟନ୍ତ ସୁଖଦାନ କରୁଥାଉ । ବଜ୍ରତୁଲ୍ୟ କଠୋର ଦୁର୍ଜନମାନଙ୍କ ବାଣୀ ସମ୍ପୂର୍ଣ୍ଣରୂପେ ଶାନ୍ତ ହେଉ । ୧୪୨ ।

ହିତୋପଦେଶ କଥାସଂଗ୍ରହ ସମାପ୍ତ ।